# ଆଭାସ

'ଋଷ ବିପ୍ଳବ' ବହି ଓଡ଼ିଆରେ ବହୁ ଆଗରୁ ପ୍ରକାଶ ପାଇବା ଉଚିତ ଥିଲା । କିନ୍ତୁ ଋଷ ବିପ୍ଳବର ଯେଉଁ ବିଶେଷତ୍ୱଟିକ ଅଛି, ବୋଧହୁଏ ସେଥି ଯୋଗୁଁ କେବଳ ଆଜଯାଏ କୌଣସି ଲେଖକ ଓ ପ୍ରକାଶକ ଏହାକୁ ଓଡ଼ିଆ ଜାତି ଆଗରେ ଜଣାଇବାକୁ ସାହସ କରି ନ ଥିଲେ ।

ଏ ପର୍ଯ୍ୟନ୍ତ ଦୁନିଆର ଇତିହାସରେ ଯେତେ ବିପ୍ଳବ ଘଟିଯାଇଛି ଓ ଓଡ଼ିଆ ଭାଷାରେ ଯେତେ ବୈପ୍ଳବିକ ଇତିହାସର କାହାଣୀ ପ୍ରକାଶ ପାଇଛି, ସମସ୍ତଙ୍କର ଧାରା ଓ ଧରଣ ସମାନ, ସମସ୍ତଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଏକ । ସବୁଠାରେ ଗୋଟିଏ ଶୋଷକ ଶ୍ରେଣୀ ବଦଳରେ ଆଉ ଗୋଟିଏ ଶୋଷକ ଶ୍ରେଣୀ ଉଦ୍ଭବ କରିଛି । ନିଜର ଶ୍ରେଣୀ ସ୍ୱାର୍ଥ ଓ ଆଧିପତ୍ୟ ବିସ୍ତାର ଲାଗି

Digitized by srujan ka@gmail.com

ଶାସନକଳକୁ ଅଧିକାର କରିଛି । ତା’ ପରେ ପୁଣି ସେହି ଶୋଷକ ବୁର୍ଜୁଆର ଶାସନକୁ ଭାଙ୍ଗିବ ନାହିଁ । କୌଣସି ଜାତୀୟ ସମସ୍ୟା ନେଇ ଏହା ମୁକ୍ତି ଓ ପ୍ରଗତିର ଧ୍ୱଜା ଟେକି ପାରିଥାଏ; କିନ୍ତୁ ଫରାସୀ ବିପ୍ଳବଠାରୁ ଆଜି ଭାରତର ସ୍ୱାଧୀନତା ଆନ୍ଦୋଳନ ଯାଏ, ସବୁ ବିପ୍ଳବର ଉଦ୍ଦେଶ୍ୟ ହେଉଛି ଏକ— ଗୋଟିଏ ନୂଆ ଶ୍ରେଣୀର ଶୋଷଣ ଶାସନକୁ କାଏମ କରିବା ।

କିନ୍ତୁ ଋଷ ବିପ୍ଳବର ଗତି ଓ ଉଦ୍ଦେଶ୍ୟ ଏ ସବୁ ବିପ୍ଳବଠୁ ପୃଥକ୍ । ତା ଶୋଷକ ଶ୍ରେଣୀ ବିରୁଦ୍ଧରେ ଅନ୍ୟ ଏକ ଶୋଷକ ଶ୍ରେଣୀର ବିପ୍ଳବ ନୁହେଁ ବା କୌଣସି ଶୋଷକ ଶ୍ରେଣୀ ହାତରେ କ୍ଷମତା ଦେଇ ନାହିଁ । ଯେଉଁମାନେ ସମାଜରେ ସବୁଠାରୁ ପଦଦଳିତ ହୋଇ ରହିଥିଲେ, ସବୁଠାରୁ ବେଶି ଶୋଷିତ ଓ ନିପୀଡ଼ିତ, ତାହା ସେହି କୃଷିମୂଲିଆ ସର୍ବହରା ଶ୍ରେଣୀର ବିପ୍ଳବ । ଋଷ ଦେଶରେ ଚିରଦିନ ଲାଗି ସେମାନେ ଧନୀ ଜମିଦାର ପୁଞ୍ଜିପତିଙ୍କ ଶୋଷଣ ଶାସନକୁ ଲୋପ କରିଛନ୍ତି । ସେଠାରେ ଶ୍ରେଣୀହୀନ, ଶୋଷଣହୀନ ସମାଜ ଗଢ଼ି ଉଠିଛି ।

ଏହି ପାର୍ଥକ୍ୟହିଁ ଋଷ ବିପ୍ଳବର ବିଶେଷତ୍ୱ; ଆଉ ଏହି ପାର୍ଥକ୍ୟ ଯୋଗୁହିଁ ଆଜି ଋଷ ବିପ୍ଳବ ଦୁନିଆର ସ୍ୱାଧୀନତା ଓ ଗଣତନ୍ତ୍ରପ୍ରେମୀଙ୍କର ଆଦର୍ଶ ହୋଇ ଠିଆ ହୋଇଛି ।

ଅବଶ୍ୟ ଏହା ସହଜରେ ହାସଲ ହୋଇ ନାହିଁ । କେବଳ ସେ ସୌଖିନ ମତବାଦର ପ୍ରଚାର ଦ୍ୱାରା ଏହା ସମ୍ଭବ ନୁହେଁ । ଏଥିଲାଗି ଯେପରି ଭାବେ ଲୋକଙ୍କୁ ସଂଗଠିତ କରାଯାଇଛି, ତରୁଣ ଦଳ ଓ ବିପ୍ଳବର ଶତ୍ରୁଗଣଙ୍କ ବିରୁଦ୍ଧରେ ଯେଉଁ ନୀତିଗତ ସଂଗ୍ରାମ କରାଯାଇଛି, ତାକୁ ଏ ବହିରେ ଅତି ସ୍ପଷ୍ଟ କରି ଦେଖାଇବାର ଚେଷ୍ଟା ହୋଇଛି ।

ବର୍ତ୍ତମାନ ଭାରତର ବୈପ୍ଳବିକ ଅବସ୍ଥାରେ ପ୍ରତ୍ୟେକ ବିପ୍ଳବୀ ସୈନିକ ତଥା ମୁକ୍ତିକାମୀ ବ୍ୟକ୍ତି ଋଷ ବିପ୍ଳବର ଇତିହାସକୁ ସେହି ଦୃଷ୍ଟିରେ ପଢ଼ିବାର କଥା ।

- -

Digitized by srujan ka@gmail.com

ଦ୍ୱିତୀୟରେ ବିପ୍ଳବର ଆକ୍ରମଣ କେବଳ ଧନିକ ବୁର୍ଜୁଆ ଶ୍ରେଣୀର ମାଲିକ ନୀତିକୁ ଲକ୍ଷ୍ୟ କରିବା ଦରକାର—ଏମାନେ ଆଗ ଜଗତ ସେବକ ଚେତା ଘାଲି ଥାଅନ୍ତି ଏବଂ ପରେ ନିଜର ପ୍ରଭାବ ଓ ଷଡ଼ଯନ୍ତ୍ର ଦ୍ୱାରା ବିପ୍ଳବର ଚରମ ଲକ୍ଷ୍ୟକୁ ପଣ୍ଡ କରିବାକୁ ବସନ୍ତି; ମୂଳତଃ ଶୋଷଣଶୀଳ ସମାଜର ପ୍ରତିଷ୍ଠାକୁ ଦୃଢ଼ କରନ୍ତି; ଶତ୍ରୁ ସଙ୍ଗେ ମାଲିକର ନୀତି ଧରି ନିଜର ସ୍ୱାର୍ଥ ରକ୍ଷା ଲାଗି, ପୁଣି ଲୁଣ୍ଠନମୂଳକ ଶାସନ କାଏମ କରିବାକୁ ଯାଆନ୍ତି ।

ତୃତୀୟରେ ଲକ୍ଷ୍ୟ କରିବାର ବିଷୟ ହେଉଛି, ସୋସିଆଲିଷ୍ଟ ରିଭଲ୍ୟୁସନାରୀ ଦଳଙ୍କର ସୁବିଧାବାଦୀ ନୀତି । ଏମାନେ ଜମିଦାର ଧନିକ ଶ୍ରେଣୀ ପକ୍ଷରେ ବିପ୍ଳବର ଧ୍ୱଜା ଉଠାଇ ନାମରେ ସେମାନଙ୍କ ସାଙ୍ଗରେ ମିଶି ଯାଆନ୍ତି; ଶୁଖି ମୂଳରୁ, ବୈପ୍ଳବିକ ଜନତା ମନରେ ଧନିକମାନଙ୍କର ଦୟା, କରୁଣା, ସ୍ୱାଧୀନତାପ୍ରୀତି ବିଷୟରେ ଭ୍ରମଧାରଣା ସୃଷ୍ଟି କରନ୍ତି ଏବଂ ବିପ୍ଳବର ଜୁଆରକୁ ଭିତରୁ ଭାଙ୍ଗିବାରେ ଲାଗିଥାଅନ୍ତି ।

ଚତୁର୍ଥରେ ଲକ୍ଷ୍ୟର ବିଷୟ ହେଉଛି—ସର୍ବହରା ବିପ୍ଳବର ପନ୍ଥା, ତାକୁ କାର୍ଯ୍ୟକାରୀ କରିବାର ଉପାୟ, ସେଥିଲାଗି ଆପୋଷହୀନ ସଂଗ୍ରାମ, ଜନସାଧାରଣଙ୍କ ଉପରେ ଅଟଳ ବିଶ୍ୱାସ, ନିର୍ଭୁଲ ନୀତି ଓ ନିର୍ଭୀକ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ହେବ ।

ବିଶେଷତଃ ବର୍ତ୍ତମାନ ଭାରତରେ ହିନ୍ଦୁସ୍ଥାନ ପାକିସ୍ଥାନ ହୋଇଗଲା ବେଳେ ଋଷରେ ଜାତିଗତ ସମସ୍ୟାର ସମାଧାନ ପ୍ରତ୍ୟେକ ଲୋକ ପକ୍ଷରେ ସବୁଠାରୁ ଶିକ୍ଷଣୀୟ ବିଷୟ । କାରଣ ଆମର ଭାରତ ପରି ଋଷ ଏକ ବିରାଟ ଦେଶ, ବହୁ ଜାତି ଓ ବହୁଭାଷାଭାଷୀ ଲୋକଙ୍କର ବାସ-ସ୍ଥାନ । ଆଜି ସେଠାର ରାଜା ଜାର୍ ମଧ୍ୟ ଦଳନ, ଆଜିର ଆମ ବ୍ରିଟିଶ ଶାସକଙ୍କ ପରି ଗୋଟିଏ ଜାତି ବିରୁଦ୍ଧରେ ଆଉ ଗୋଟିଏ ଜାତିକୁ ମତାଇ ଥିଲେ, ସେହିପରି ହାଣକାଟ ବିବାଦ ଭିତରେ ରାଜ୍ୟ ଶାସନର ଉପାୟ ଧରିଥିଲେ । କିନ୍ତୁ ସେଠାରେ ଏ ସମସ୍ୟାର ସମାଧାନ କରାଗଲା କିପରି ?

Digitized by srujan ka@gmail.com

ହଜାର ହଜାର ମଜଦୁର ଆଉ ସେଣ୍ଟ୍ ପିଟର୍ସ୍ବର୍ଗବାସୀ ଧର୍ମଧ୍ୱଜା ଧରି ଭଗବାନଙ୍କ ନାମ ଗାଇ ବାଜା ବଜେଇ ସହସ୍ରେ ଚାଲିଲେ ଜାରଙ୍କ ରାଜପ୍ରାସାଦ ସାମନାରେ । ହାତରେ ଧରିଥାନ୍ତି ଗୋଟିଏ ଆବେଦନ ପତ୍ର । ସେଥିରେ ଲେଖାଥାଏ :—

"ଆମେ ପିଟର୍ସ୍ବର୍ଗର ମଜଦୁର, ଆମ ସ୍ତ୍ରୀ, ପିଲାଛୁଆ ଆଉ ଆମର ଅସମର୍ଥ ବୁଢ଼ା ବାପ ମା ଶ୍ରୀହଜୁରଙ୍କ ପାଖକୁ ଆସିଚୁଁ । ହେ ମହାରାଜ, ଆପଣଙ୍କଠାରୁ ଆମେ ଚାହୁଁ ସତ୍ୟ ଓ ଆଶ୍ରୟ । ଆମେ ଗରିବ ଆଉ ଦଳିତ—ଅତି କଷ୍ଟରେ ଦିନ କାଟୁଁ—ଅପମାନ ଆମ ଜୀବନର ପୁରସ୍କାର—ଆମେ ମଣିଷ ବୋଲି ଗଣା ହେଉ ନା—ଆମର ଦୁଃଖ ଧୈର୍ଯ୍ୟର ସୀମା ଟପି ଗଲଣି—

ମହାପ୍ରଭୁ, ଶ୍ରୀହଜୁର ପ୍ରଜାଙ୍କୁ ସାକ୍ଷାତ ଦେବାକୁ ଆଜ୍ଞା କରନ୍ତୁ ଆଜି । ଶ୍ରୀହଜୁର ଆଉ ଲୋକଙ୍କ ଗହଳରେ ଯେଉଁ ମେଘନାଦ ପାଚେରି ରହିଛି ତାକୁ ଭାଙ୍ଗିଦିଅନ୍ତୁ । ଆଦେଶ ଦିଅନ୍ତୁ ଆଉ ଶପଥ କରନ୍ତୁ ଯେ ଆମର ଦାବି ଶ୍ରୀହଜୁର ପୂରଣ କରିବେ ଓ ରୁଷ ଦେଶକୁ ସୁଖୀ କରିବେ । ତା ନ ହେଲେ ଆମେ ଏଇଠି ସରିଏଁ ମରିବୁଁ । ଆମ ଆଗରେ ଦୁଇଟି ରାସ୍ତା—ମୃତ୍ୟୁ ଓ ସୁଖଶାନ୍ତି ନଚେତ୍ କବରଭୂଇଁ ।"

ଆଗରୁ ସତ୍ତ୍ୱ, ଶୋଭାଯାତ୍ରାପାଇଁ ମନା କରା ଥାଏ । ଜର୍ଜ ଗେପନ୍ ନାଁର ଜଣେ ପାଦ୍ରୀ ସେହି ଶୋଭାଯାତ୍ରାର ନେତା ।

ହଠାତ୍ ବନ୍ଧୁକ, ତୋପର ଗୁଡୁମ୍ ଗୁଡୁମ୍ ଶବ୍ଦରେ ବରଫର ପିଟର୍ସ୍ବର୍ଗ ନଗରୀ ଲାଲ ହୋଇଗଲା । ହଜାରେ ମଜଦୁର ସେଇ ରାଜପଥରେ କବର ନେଲେ ଆଉ ଦୁଇ ହଜାର ସାଂଘାତିକ ଭାବେ ଆହତ ହେଲେ । ନେଭାନଦୀର ପାଣି ମଣିଷ ରକ୍ତରେ ଲାଲ ହୋଇ ଉଠିଲା । ଜାର୍ ନିକୋଲାସ୍ ଆଉ ରାଣୀ ହସିଲେ—ଉପହାସ ଓ ତାଚ୍ଛଲ୍ୟର ହସ ।

Digitized by srujan ka@gmail.com

ପାଦ୍ରୀ ଜର୍ଜ ଗେପନ୍ 'ଜୁବାଟୋଫ୍' ଆନ୍ଦୋଳନର ନେତା । ଏହାର ମଜଦୁର ଆନ୍ଦୋଳନ ଭିତରେ ମାର୍କ୍ସୀୟ କମ୍ୟୁନିଷ୍ଟ ଚିନ୍ତାଧାରା ବ୍ୟାପିବାରେ ଜାର୍‌ଙ୍କ ପୁଲିସ, ଧନୀ ପୁଞ୍ଜିପତି ବ୍ୟବସାୟୀ ମଜଦୁର-ମାନଙ୍କ ବାଦ୍ ହାତ ଥିବା ମଜଦୁର ସଂଗଠନ ଗଢ଼ିଲେ । ଧର୍ମ, ଭଗବାନ, ନ୍ୟାୟ, ଅହିଂସା ଓ ଶାନ୍ତିର ଦୁହାଇ ଦେଇ ବଲ୍‌ସେଭିକ୍‌ମାନଙ୍କଠାରୁ ଶ୍ରମିକ ଆନ୍ଦୋଳନକୁ ଦୂରରେ ରଖିବା ଥିଲା ଏହି ଆନ୍ଦୋଳନର ଅସଲ ଉଦ୍ଦେଶ୍ୟ । 'ଓଖରାନା' ନାମରେ ଜାର୍‌ଙ୍କର ଯେଉଁ ଅତି ଜଘନ୍ୟ ଘୃଣ୍ୟ ଗୁପ୍ତଚର ବିଭାଗ ଥିଲା, 'ଜୁବାଟୋଫ୍' ଆନ୍ଦୋଳନ ତାର ଏକ ଅଙ୍ଗ ।

ବଲ୍‌ସେଭିକ୍ ବା ଲେନିନ୍‌ପନ୍ଥୀମାନେ ଶ୍ରମିକମାନଙ୍କୁ ଏପରି ଛଟେବ ଯୋଗଦାନ ଦେବାକୁ ବାରଂବାର ମନା କଲେ ମଧ୍ୟ ସେତେବେଳର ଧର୍ମଭୀରୁ ଶ୍ରମିକମାନେ ସାଧୁ ଗେପନ୍‌ଙ୍କ କଥାରେ ଭୁଲିଗଲେ । ତେଣୁ ବଲ୍‌ସେଭିକ୍‌ମାନେ ସଭାସମିତି ଓ ଖବର କାଗଜ ଜରିଆରେ ସ୍ୱାଧୀନତା ଓ ଗଣପରିଷଦ ପ୍ରଭୃତିକୁ ଦାବୀପତ୍ରରେ ରଖି ଶ୍ରମିକ ଆନ୍ଦୋଳନର ଚିରସହଚରରୂପେ ଯୋଗଦାନ ସାଥିରେ ରହିଲେ ।

ଶ୍ରମିକ ଶ୍ରେଣୀ ଏହି ଧକ୍‌କାରେ ଅନେକ ଠାଣ, ଅନେକ ବାଟ ହୋଇ ଯାଇଥିଲା ।

## ବିଭିନ୍ନ ମତବାଦ ଓ ଋଷ୍

ଜାନୁଆରୀ ୯ ତାରିଖ ରକ୍ତ ରବିବାର ଦିନ ଜୁବାଟୋଫ୍ ଆନ୍ଦୋଳନ ଓ ବଲ୍‌ଶେଭିକ୍‌ଙ୍କ ଭିତରେ ଯେଉଁ ମତଭେଦ ଦେଖାଗଲା ତାହା କେବଳ ମତଭେଦ ନୁହେଁ। ଋଷ୍ ଦେଶରେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଆନ୍ଦୋଳନ ହୋଇଛି ଓ ଭିନ୍ନ ଭିନ୍ନ ଶ୍ରେଣୀ ଆନ୍ଦୋଳନରେ ଭାଗ ନେଇଛନ୍ତି।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଋଷର ଜାର୍‌ଶାହୀ ଶାସନ ଅଧୀନରେ କୃଷୀର ଅବସ୍ଥା ଅତି ଖରାପ ଥିଲା। ଜମିରେ ତ ତାର ଅଧିକାର ନ ଥିଲା; ଅଧିକନ୍ତୁ ଭୂସ୍ୱାମୀମାନଙ୍କର ଅତ୍ୟାଚାର, ଜୁଲମ ଜବରଦସ୍ତି ଅସହ୍ୟ ହୋଇ ପଡିଥିଲା। ତେଣୁ ତାହା ବିରୋଧରେ ଏଇ ଅଧା ଗୋଲାମମାନେ ବିଦ୍ରୋହ କରି ଉଠିଥିଲେ। ଏହି କୃଷୀ ବିଦ୍ରୋହର ନେତା ଥିଲେ କେତେ ଜଣ ଅତ୍ୟାଚାରିତ କୃଷୀ ଷ୍ଟୋଙ୍କା ରେଜିନ୍ ଓ ପୁଗାଚେଭ୍। ଏହି କୃଷୀ ବୀରମାନେ ଋଷ ବିପ୍ଳବର ଇତିହାସରେ ଚିରସ୍ମରଣୀୟ ହୋଇ ରହିଲେ। ପୁଷ୍କିନ୍‌ଙ୍କ ପରି ବିଖ୍ୟାତ କବି ବୀର ପୁଗାଚେଭଙ୍କର ବିଦ୍ରୋହର ସ୍ତୁତି ଗାଇଲେ।

Digitized by srujan ka@gmail.com

ଜାର୍ କେବଳ ଜମିମାଲିକଙ୍କ କରଅଧରେ ନୁହେଁ, ଅଧିକନ୍ତୁ ନିଜର ଧର୍ମଗୁରୁ, ବଣିକ, ଅଲଗ ଅଦାଲତ, ଗୁପ୍ତ ପୁଲିସ ଓ ସୈନ୍ୟ-ବାହିନୀ କରଅଧରେ ପ୍ରଧାନ ଗୁଳି, ଲାଠି, ବେତ, କୋରଡ଼ମାନ, ଫାଶି, ବେତମାଡ଼ ପ୍ରଭୃତି କରି କୃଷୀ କୁଳକୁ ଉଚ୍ଛନ୍ନ କରୁଥିଲେ । ଏହା ବିରୁଦ୍ଧରେ ୧୮୨୫ ଖ୍ରୀଷ୍ଟାବ୍ଦଠାରୁ କୃଷକ ବିଦ୍ରୋହମାନ ହୋଇ ଆସିଛି । ୧୮୨୫ରେ ସୈନ୍ୟବାହିନୀର ଅଫିସର ଓ ସମ୍ଭ୍ରାନ୍ତ ବଂଶମାନେ ମଧ୍ୟ ବିଦ୍ରୋହ କରିଥିଲେ । ସେମାନଙ୍କୁ ଡେକାବ୍ରିଷ୍ଟ କୁହାଯାଏ ।

କିନ୍ତୁ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଯେଉଁ ବିପ୍ଳବର ଝଡ଼ଝଞ୍ଜା ଋଷରେ ବହି ଚାଲିଲା ଶତ ଅତ୍ୟାଚାର କଲେ ମଧ୍ୟ ଜାରଶାସନ ତାକୁ ଅଟକାଇ ପାରିଲାନାହିଁ । ଏହି ସମୟର ବିପ୍ଳବ ରକ୍ତରେ ନୂଆ ସାହିତ୍ୟ ସୃଷ୍ଟି ହେଲା ଏବଂ ତୁର୍ଗେନେଭ୍, ଟଲ୍‌ଷ୍ଟୟ, ଅଲେକ୍‌ଜାଣ୍ଡାର୍ ହର୍ଜେନ୍, ଚେର୍ନିସେଭେସ୍କି, ଚେକଭ୍, ନେକ୍ରାସୋଭ୍ ପ୍ରଭୃତି ବହୁଖ୍ୟାତ ଲେଖକ ଋଷ୍ ସାହିତ୍ୟକୁ ଦୁନିଆର ସାହିତ୍ୟ ରାଜ୍ୟରେ ଅମର କରିଗଲେ ।

ଅର୍ଦ୍ଧଦାସତ୍ୱରୁ ମୁକ୍ତି ଲଭିବା ପାଇଁ କୃଷୀକୁଳର ଏହି ବିଦ୍ରୋହବେଳେ ଋଷରେ ମିଲ୍ କାରଖାନାମାନ ଗଢ଼ି ଉଠୁଥାଏ । ମିଲ୍‌ମାଲିକମାନେ ଲୋକ ଖୋଜୁଥିଲେ । ମାତ୍ର କୃଷୀମାନେ ଭୂସ୍ୱାମୀମାନଙ୍କ ନିକଟରେ ବନ୍ଧା ପଡ଼ି ଥିବାରୁ ଜମିରୁ ମୁକୁଳିବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇ ପାରୁ ନ ଥିଲା । ଏଣେ କ୍ରିମିଆ ଯୁଦ୍ଧରେ ବ୍ରିଟେନ ଓ ଫରାସୀ ହାତରେ ଜାର୍ ପରାଜିତ ହୋଇଥାନ୍ତି ଏବଂ ଦେଶଭିତରେ କୃଷୀ ବିଦ୍ରୋହ ପ୍ରବଳ ହୋଇ ଉଠୁଥାଏ । ତେଣୁ ୧୮୬୧ ମସିହାରେ ଜାରଶାସନ ଅର୍ଦ୍ଧଦାସମାନଙ୍କୁ ଗୋଲାମିରୁ ମୁକ୍ତ କରିବାକୁ ବାଧ୍ୟ ହେଲା ଏବଂ ଜମିରେ କୃଷୀର କେତେ ପରିମାଣରେ ସ୍ୱତ୍ୱ ସାବ୍ୟସ୍ତ ହେଲା । ତଥାପି ଭୂସ୍ୱାମୀ ବା ଜମି ମାଲିକମାନେ କୃଷୀଙ୍କ ଉପରେ ଅତ୍ୟାଚାରର ତାଣ୍ଡବ ଲୀଳା ଚଳେଇଲେ । କୃଷୀମାନେ ପୂର୍ବରୁ ଯେଉଁ ଜମି ଚଷୁଥିଲେ ସେଥିରୁ ଜମି ମାଲିକମାନେ ଖଣ୍ଡେ ଖଣ୍ଡେ କାଟି ରଖି ନିଜର କରିନେଲେ ଏବଂ ସେଗୁଡ଼ିକ ଫେର

Digitized by srujan ka@gmail.com

ପାଇବା ଲାଗି ଗୃହୀ ମାନଙ୍କୁ ତୁରନ୍ତ ଦୋଶ ରୁବଲ୍ ( ରୁଷ ମୁଦ୍ରା ) ଦେବାକୁ ପଡ଼ୁଥିଲା ।

ଜାର୍‌ସାମ୍ରାଜ୍ୟରେ ଋଷୀୟ ଜାତି ଯେଉଁ ଅତ୍ୟାଚାର ଓ କଷ୍ଟ ସହୁଥିଲେ ତାହା ହୃଦୟ ଇତିହାସରେ ବିରଳ । ଶ୍ୱେତ୍ ରୁଷ୍, ବାଇଲୋ ରୁଷ୍ ଓ ଧବଳ ରୁଷ୍ ହିଁ ଥିଲେ ସ୍ଲାଭ୍ ଜାତିର ଲୋକ । ମାତ୍ର ମସ୍କୋର ପୁରୁଣା ଜାର୍ ସୃଷ୍ଟି, ଜୁଅଗ୍ରେସ୍, ଲୁଟପାଠ, ରକ୍ତପାତ କରି ଫିନ୍‌ଲାଣ୍ଡ୍, ପୋଲାଣ୍ଡ୍, ଜର୍ଜିଆ, ଛର୍କିଅ, ଆର୍ମେନିଆ, ତୁର୍କ, ମଙ୍ଗୋଲ୍, ଅଜରବୈଜାନ ପ୍ରଭୃତି ଭିନ୍ନ ଜାତିର ବାସ ଭୂମିକୁ ନିଜ ଅକ୍ତିଆରରେ ଆଣି ସେମାନଙ୍କର ଭାଷା, ଶିକ୍ଷା, ସଂସ୍କୃତି, ଆଚାର ବ୍ୟବହାରକୁ ଲୋପ କରିବା ଲାଗି ସୁଚିନ୍ତିତ ଷଡ଼ଯନ୍ତ୍ର ଚଳାଇଲେ । ରୁଷ୍‌ଭାଷା, ରୁଷ ଲିପିହିଁ ସର୍ବତ୍ରରେ ଚଳିଲା । ଚାକିରି, ବ୍ୟବସାୟ ବାଣିଜ୍ୟ, ସୈନ୍ୟ ବାହିନୀ କେବଳ ରୁଷ୍ ଜାତିର ଲୋକଙ୍କର ସବୁଦିନିଆ ଫିଙ୍କା ହେଲା ।

ଋଷୀୟ ଜାତି ମଧ୍ୟ ଏହି ଗୋଲାମିରୁ ମୁକ୍ତି ପାଇବା ଲାଗି ସବୁ ଅତ୍ୟାଚାର ଓ ଦମନ ସତ୍ତ୍ୱେ ଆନ୍ଦୋଳନ ଚଳେଇଲେ ।

ଋଷୀୟ ମତବାଦ ଓ ଆନ୍ଦୋଳନ ଭିତରେ ୧୮୯୦ ବେଳକୁ ରୁଷ୍‌ରେ ଦୁଇଟି ମତବାଦ ଅତି ସ୍ପଷ୍ଟ ହୋଇ ଆସିଲା । ଗୋଟିଏ ହେଉଛି ନରୋଦ୍-ବାଦ ଓ ଅନ୍ୟଟି ମାର୍କ୍ସ୍‌ବାଦ ।

କଳକାରଖାନାର ଯୁଗ ଇଉରୋପ ଭିତରେ ରୁଷ୍‌ଦେଶକୁ ସବାପଛେ ଆସିଲା ସତ; ମାତ୍ର ଯେତେବେଳେ ଆସିଲା ସେତେବେଳେ ଶିଳ୍ପଗୁଡ଼ିକ ଛୋଟ ଛୋଟ କ୍ଷେତ୍ର ଭାବରେ ନ ହୋଇ ଅତି ବଡ଼ ବଡ଼ ଆକାରରେ ଗଢ଼ିଉଠିଲା । ତାହା ସଙ୍ଗେ ସଙ୍ଗେ ନୂଆ ଶିଳ୍ପ କାରଖାନା ଥିବା ସହରମାନ ମଧ୍ୟ ବଢ଼ିଗଲା । କୃଷିପ୍ରଧାନ ରୁଷ୍ ଶିଳ୍ପପ୍ରଧାନ ରାଷ୍ଟ୍ରରେ ପରିଣତ ହେବାକୁ ଲାଗିଲା । ଜମିମାଲିକ, ମହାଜନ ଓ ବଣିକମାନେ ହେଲେ ପୁଞ୍ଜିପତି ଶ୍ରେଣୀ ଓ ସେମାନଙ୍କ ସଙ୍ଗେ ସଙ୍ଗେ ଶ୍ରମିକଙ୍କର ମଧ୍ୟ ରୂପ ବଦଳିଗଲା ।

Digitized by srujan ka@gmail.com

କୃଷି ଶ୍ରେଣୀରୁ ଯେଉଁମାନେ ଗୃହ ଛାଡ଼ି ଯାଇ କଳକାରଖାନାରେ ମାଲିକ ପାଖରେ ନିଜର ପରିଶ୍ରମଶକ୍ତି ବିକି କଲେ ସେମାନେ ହେଲେ ମଜଦୁରଶ୍ରେଣୀ ବା ସର୍ବହରା ଶ୍ରେଣୀ ।

ତେଣୁ ସହରେ ଅତ୍ୟାଚାର, ଶୋଷଣ ବିରୁଦ୍ଧରେ ନୂଆ ଶ୍ରେଣୀ ସଙ୍ଗେ ନୂଆ ଆନ୍ଦୋଳନର ସୃଷ୍ଟି ହେଲା । ସେହି ଆନ୍ଦୋଳନ ହେଲା ସର୍ବହରା ଶ୍ରେଣୀର ମାର୍କ୍ସ୍‌ବାଦୀ ଆନ୍ଦୋଳନ ।

୧୮୮୩ରେ ଜର୍ଜ ପ୍ଲେଖାନଭ୍ ନାମକ ଜଣେ ବିପ୍ଳବୀ ନିର୍ବାସିତ ହୋଇ ସ୍ୱିଜରଲାଣ୍ଡରେ ଗୋଟିଏ 'ଶ୍ରମିକ ମୁକ୍ତି ସଂଘ' ଗଢ଼ିଥିଲେ । ଏହା ପୂର୍ବରୁ ୧୮୭୫ ରେ ଓଡ଼େଶାରେ ଦକ୍ଷିଣ ଋଷ ମଜଦୁର ୟୁନିୟନ ଗଢ଼ା ହୋଇ ୯ ମାସ କାଳ ତିଷ୍ଠି ପାରିଥିଲା । ୧୮୭୮ରେ ଖାଲତୁରିନ୍ ନାମକ ଜଣେ ବଢ଼େଇ ଓ ଓବନରସ୍କି ନାମକ ମିସ୍ତ୍ରୀ ସେଣ୍ଟପିଟର୍ସବର୍ଗରେ ଉତ୍ତର ଋଷ୍ ମଜଦୁର ୟୁନିୟନ ଗଢ଼ିଥାନ୍ତି । କିନ୍ତୁ ଜାରଶାହୀ ପୁଲିସ ଏ ଦୁଇଟିଯାକ ୟୁନିୟନକୁ ମୂଳ ଅଙ୍କୁରରେ ଚୂରମାର କରିଥାଏ ।

ନିଜେ ଜଣେ ନରୋଦପନ୍ଥୀ ଥାଇ ପ୍ଲେଖାନଭ୍ ଯେତେବେଳେ ମାର୍କ୍ସ୍‌ବାଦ ପଢ଼ିଲେ ସେତେବେଳେ ନରୋଦବାଦ ବିରୁଦ୍ଧରେ ଘୋର ଆନ୍ଦୋଳନ ଚଳେଇ ଅନେକ ବହି ଲେଖି ଋଷରେ ମାର୍କ୍ସ୍‌ବାଦ ଚିନ୍ତାଧାରାର ପ୍ରଚାର ଓ ପ୍ରସାର କଲେ । ପ୍ଲେଖାନଭ୍‌ଙ୍କର ଏହି ଶ୍ରମିକ ମୁକ୍ତି ସଂଘ ୧୮୮୮ରେ ବିଦେଶରେ ଥିବା ଋଷ୍ ସୋସିଅଲ ଡେମୋକ୍ରାଟ୍ ବା ସାମ୍ୟବାଦୀମାନଙ୍କ ସେନା ଗୋଟିଏ କେନ୍ଦ୍ର ଅନୁଷ୍ଠାନ କରିଥିଲେ । ଏହି ସମୟରେ ଋଷ୍ ଭିତରେ ବଡ଼ ବଡ଼ ସହର ଓ ଶିଳ୍ପକାରଖାନାମାନଙ୍କରେ ମାର୍କ୍ସ୍‌ବାଦର ପ୍ରଚାର ଓ ଆନ୍ଦୋଳନ ଲାଗି ଛୋଟ ଛୋଟ ଦଳମାନ ଗଢ଼ି ଉଠୁଥାଏ ।

ମାତ୍ର ନରୋଦବାଦ ମାର୍କ୍ସ୍‌ବାଦର ପ୍ରସାରରେ ଏକ ବିରାଟ ବାଧା ହୋଇ ଛିଡ଼ା ହୋଇଥାଏ । ନରୋଦପନ୍ଥୀମାନଙ୍କ ମତରେ ଋଷ୍‌ରେ

Digitized by srujan ka@gmail.com

ମୁକ୍ତିବାଦର ମୂର୍ତ୍ତି ଦେବତାଙ୍କି; 'ଲୁଣ୍ଠକ ଶ୍ରେଣୀଟି ସବୁଠାରୁ ବଳୁଆ ଶ୍ରେଣୀ । ଅତଏବ ଶ୍ରମିକ ଶ୍ରେଣୀ ଲୁଣ୍ଠକମାନଙ୍କ ବଳରେ କୌଣସି ସଂଗଠନ କରି ନ ପାର ନରୋଦନିକ୍‌ମାନେ ବ୍ୟକ୍ତିଗତ ହତ୍ୟା ବା ସନ୍ତ୍ରାସବାଦର ଆଶ୍ରୟ ନେଇଲେ ଲେନିନ୍ ସେହି ସଂଗଠିତ ଆନ୍ଦୋଳନର ପାଠ ଛାଡ଼ି ନଥିଲେ ଶାନ୍ତିପ୍ରିୟ କରେ ଦ'ଜଣଙ୍କୁ ମାତ୍ର "ବୀର" ଦେଲେ ଲୋକମାନେ ତାଙ୍କ ଅନୁକରଣ କରିବେ ବୋଲି ଭାବିଲେ । ପ୍ଲେଖାନଭ୍ ନରୋଦପନ୍ଥୀଙ୍କର ଏହି ଭୁଲ୍ ନୀତିର ତୀବ୍ର ସମାଲୋଚନା କରିଥିଲେ ଏବଂ ମାର୍କ୍ସ୍‌ବାଦର ବୈଜ୍ଞାନିକ ଯୁକ୍ତିବତ୍ତା ଓ ତାର ପ୍ରୟୋଗର ନିର୍ଭୁଲତା ଅନେକ ଉଦାହରଣରେ ପ୍ରମାଣ କଲେ ।

ଋଷ୍ ବିପ୍ଳବ ଇତିହାସର ଏହି ଘଡ଼ି ସନ୍ଧି ବେଳେ କମ୍ୟୁନିଷ୍ଟ ବା ବଲ୍‌ଶେଭିକ୍‌ବାଦର ନେତା ଲେନିନଙ୍କର ଆବିର୍ଭାବ ହେଲା । ଏକ କଳ୍ପନା ଛଡ଼ି ନୂଆଭାବରେ ଜାର୍‌ଶାହୀ ଶାସନ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବାବେଳେ ଲେନିନ୍ କାଜାନ ସହରରେ ମାର୍କ୍ସ୍‌ପନ୍ଥୀଙ୍କ ସଙ୍ଗେ ଯୋଗ ଦେଲେ ଏବଂ ସେହି ଦିନଠାରୁ ମାର୍କ୍ସ୍ ଓ ଏଙ୍ଗେଲ୍‌ସ୍‌ଙ୍କ ଲେଖାର ଗବେଷଣା କରି ୨୪ ବର୍ଷ ବୟସରେ ଋଷ୍‌ରେ ଜଣେ ଅଦ୍ୱିତୀୟ ମାର୍କ୍ସିଷ୍ଟ୍ ରୂପେ ଗଣା ହେଲେ ।

୧୮୯୫ରେ ଲେନିନ୍ ସେଣ୍ଟ ପିଟର୍ସ୍‌ବର୍ଗରେ ଥିବା ୨୦ଟି ମାର୍କ୍ସୀୟ ଚକ୍ରକୁ ଏକାଠି କରି ସର୍ବପ୍ରଥମେ ଏକ ବୈପ୍ଳବିକ ମାର୍କ୍ସ୍‌ବାଦୀ ଦଳ ଗଢ଼ିଲେ ଏବଂ ମାର୍କ୍ସ୍‌ପନ୍ଥୀ ମଜଦୁରମାନଙ୍କ ସଂଗ୍ରାମ ଆନ୍ଦୋଳନରେ ଯୋଗ ଦେଇ ନୀତି ଓ କାର୍ଯ୍ୟକୁ ଏକାଠି କରି ଏକ ସୁଦୃଢ଼ ମଜଦୁର ଆନ୍ଦୋଳନ ଛିଡ଼ାକଲେ ।

ଏହି ଦିନଠାରୁ ଋଷ୍ ବିପ୍ଳବରେ ନୂଆ ଅବସ୍ଥାର ସୃଷ୍ଟି ହେଲା । ନୂଆ ଦଳ, ନୂଆ କୌଶଳ, ନୂଆ କର୍ମପନ୍ଥା । ସେହି ଏଣିକି ଲେନିନ୍ ଓ ତାଙ୍କର ସହଯୋଗୀ ବଲ୍‌ଶେଭିକ୍‌ମାନେ ଋଷ୍ ମଜଦୁର ଆନ୍ଦୋଳନକୁ ଚଳେଇଲେ ।

Digitized by srujan ka@gmail.com

ତାଙ୍କର ଶୀତକାଳୀନ ରାଜପ୍ରାସାଦ ଥରେ ଉଡ଼ିଲା । ଗ୍ରୀଷ୍ମ, ଶୀତ, ବର୍ଷା କୌଣସି ଋତୁରେ ତାଙ୍କୁ ଶାନ୍ତି ମିଳୁ ନ ଥି । ମୃତ୍ୟୁଅନ୍ତେ ତାଙ୍କୁ ଦେଖିବାକୁ ଅତନ୍ତ୍ର ଜଗର ବଦଳ ହୁଏ । ଲେନିନ୍ ଓ ବଲ୍ ସେଭିକ୍ ମାନଙ୍କୁ ଆଘାତ କରିବା ପାଇଁ ସେ ଶପଥ ନେଲେ । ଏହି ବଲ୍ ସେଭିକ୍ବାଦ କେବଳ ଜାରଙ୍କର ବା ଜାରିନାଙ୍କର ଶତ୍ରୁ ନୁହେଁ, ରୁଷ୍ ସମାଜର ଯେଉଁମାନେ ଉପର ପୀଢ଼ରେ ଥାଇ ଜାରଶାସନର ରକ୍ଷକ ଥିଲେ ଅର୍ଥାତ୍ ଧନୀ, ଜମିଦାର, ବ୍ୟବସାୟୀ, ଶିଳ୍ପପତି ଏବଂ ସେମାନଙ୍କ ପାର୍ଶ୍ୱଚର, ଅନୁଚର ସମସ୍ତେ ଜୀବନପଣ କରି ନାନା ଉପାୟ ଖଞ୍ଜି ବଲ୍ ସେଭିକ୍ବାଦକୁ ମାରିବାକୁ ବସିଲେ ।

ଲେନିନ୍ ଓ ବଲ୍ସେଭିକ୍ ( କମ୍ୟୁନିଷ୍ଟ ) ମାନେ ନିଜର ବୈପ୍ଳବିକ ସଂଗଠନ, କର୍ମନିଷ୍ଠା ଓ ଜାଢର ଏକତା ରକ୍ଷା କରି ସମାଜର ଏହି ଶତ୍ରୁମାନଙ୍କ ବିରୁଦ୍ଧରେ ଲଢ଼ିଲେ । ଜେନେରାଲ ଡେନିକିନ୍ ନୁହେଁ, କୋଲ୍ଚାକ୍, ସୋସାଲିଷ୍ଟ ରିଭଲ୍ୟୁସନାରୀ, କ୍ୟାଡେଟ୍, ଲିବରାଲିଷ୍ଟ, 'ଲିଗାଲ ମାର୍କ୍ସିଷ୍ଟ, ଟ୍ରଟ୍ସ୍କିପନ୍ଥୀ, ବୁଖାରିନ୍ପନ୍ଥୀ ପ୍ରଭୃତି ଯେଉଁ ଦଳମାନେ ବିପ୍ଳବର ନାମରେ ବିପ୍ଳବକୁ ଧ୍ୱଂସ କରିବାକୁ ଓ ପୁଞ୍ଜିବାଦୀ ଶାସନକୁ ରକ୍ଷା କରିବାକୁ ଜାଢ ଓ କର୍ମଚେଷ୍ଟା ନେଇଥିଲେ ସେମାନଙ୍କ ଜାଢକୁ ପଦାରେ ପକାଇ ଲେନିନ୍ ରୁଷ ବିପ୍ଳବକୁ ଜୟଯୁକ୍ତ କରିଥିଲେ ।

Digitized by srujan ka@gmail.com

# ସୁବିଧାବାଦ ବିରୁଦ୍ଧରେ ଲେନିନ୍‌ଙ୍କ ଲଢ଼େଇ

ପ୍ଲେଖାନଭ୍ ନରୋଦବାଦ ବିରୁଦ୍ଧରେ ଯେଉଁ ଆନ୍ଦୋଳନ କରିଥିଲେ ତାହା ନରୋଦବାଦକୁ ସମୂଳେ ନିର୍ମୂଳ କରି ନ ଥିଲା । ନରୋଦବାଦର ଫାଙ୍କା ବୈପ୍ଳବିକ ଆବାଜ ପ୍ରତି କେତେକ ଶ୍ରେଣୀର ଯୁବକମାନେ ଆକୃଷ୍ଟ ଥିଲେ । ପଛକୁ ନରୋଦପନ୍ଥୀମାନେ ଜାରଙ୍କ ସଙ୍ଗେ ସାଲିସ କରିବା ମନୋଭାବ ପ୍ରଚାର କଲେ । ଲେନିନ୍ "ଜନତାର ବନ୍ଧୁମାନେ ପ୍ରକୃତ କି'ଣ ?" ନାମକ ବହି ଲେଖି ସୁବିଧାବାଦୀ ନରୋଦ-ପନ୍ଥୀମାନଙ୍କ ବିପ୍ଳବର ମୁଖା ଖୋଲିଦେଲେ ଏବଂ ମଜଦୁର ସଙ୍ଗେ କୃଷକର ବୈପ୍ଳବିକ ଏକତା ଯେ ଜାରଶାହୀ ଶାସନର ଲୋପ କରିପାରିବ ଏହା ପ୍ରମାଣ କଲେ ।

ନରୋଦପନ୍ଥୀମାନଙ୍କର ସୁବିଧାବାଦ ଲେନିନଙ୍କ ଆନ୍ଦୋଳନ ଫଳରେ ଏକ ମରଣ ଧକ୍କା ଖାଇଲା ସତ, ମାତ୍ର ମାର୍କ୍ସବାଦର ଶତ୍ରୁ ଅଭାବ ରହିଲେ ନାହିଁ । "କାନୁନୀ ମାର୍କ୍ସବାଦୀ" ନାମକ ଗୋଟିଏ ଦଳ ପୁଣି ବାହାରିଲେ । ସେମାନଙ୍କର ନେତା ଥିଲେ ପିଟର୍ ଷ୍ଟ୍ରୁଭ୍ । ଜାର ଶାସନ ଏମାନଙ୍କୁ ପ୍ରଚାର ପାଇଁ ସବୁ ସୁବିଧା ସୁଯୋଗ ଦେଲା । ନିଜକୁ ମାର୍କ୍ସବାଦୀ ବୋଲି ଏମାନେ ଧନୀ ସଂପ୍ରଦାୟର ସ୍ତୁତିଗାନ କଲେ । ଏମାନଙ୍କ ନେତା ପିଟର୍ ଷ୍ଟ୍ରୁଭ୍ କହୁଥିଲେ ଯେ ଆମର ସଂସ୍କୃତି ନାହିଁ ବୋଲି ଆମେ ମାନୁଁ ଏବଂ ତେଣୁ ପୁଞ୍ଜିବାଦ ପାଖକୁ ଶିକ୍ଷାଲାଗି ଯାଉଁ ।

Digitized by srujan ka@gmail.com

ନରୋଦବାଦ ବିରୁଦ୍ଧରେ ଲଢ଼ିବା ଲାଗି ଲେନିନ୍ ଏଇ "କାନୁନୀ ମାର୍କ୍ସବାଦୀ" ଙ୍କ ସଙ୍ଗରେ କିଛିଦିନ ସହଯୋଗ ରଖିଥିଲେ ଏବଂ ନରୋଦବାଦର ଲୋପ ପରେ ସେ ଏହି 'କାନୁନୀ ମାର୍କ୍ସବାଦୀ'ଙ୍କୁ ମଧ୍ୟ ସମାଧି ଦେଇଥିଲେ ।

ମାର୍କ୍ସବାଦର ଏଇ ଦୁଇ ପ୍ରଧାନ ଶତ୍ରୁଦଳର କାର୍ଯ୍ୟକଳାପ ଖଣ୍ଡନ କରି ଲେନିନ୍ ମାର୍କ୍ସପନ୍ଥୀ ଦଳମାନଙ୍କୁ ଏକାଠି କରି ୧୮୯୮ ମସିହାରେ ପ୍ରଥମ 'ରୁଷ ସମାଜତନ୍ତ୍ରୀ ଶ୍ରମିକ ଦଳ' ନାମକ କେନ୍ଦ୍ର ଅନୁଷ୍ଠାନ ଗଢ଼ିଲେ । ମାତ୍ର ଏହାର ପ୍ରଥମ ଅଧିବେଶନ ବେଳେ ଲେନିନ୍ ସାଇବେରିଆରେ ନିର୍ବାସନ ଦଣ୍ଡ ଭୋଗୁଥାଆନ୍ତି । ସେହି ନିର୍ବାସନରୁ ମଧ୍ୟ ସେ ଏହାକୁ ନେତୃତ୍ୱ ଦେଇ ପରିଚାଳନା କରୁଥାନ୍ତି ।

ଏତିକିବେଳେ ଅର୍ଥାତ୍ ୧୮୯୯ ରେ ପ୍ରୋକୋପୋଭିଚ୍ ପ୍ରଭୃତି କେତେକ ମାର୍କ୍ସବାଦର କଦର୍ଥ କରି ପ୍ରଚାର କଲେ ଯେ ମଜଦୁର-ମାନଙ୍କର କୌଣସି ସ୍ୱାଧୀନ ରାଜନୈତିକ ଦଳ ଦରକାର ନାହିଁ — ମଜଦୁରମାନେ କେବଳ ଅର୍ଥନୈତିକ ଲଢ଼େଇ କରିବେ । ରାଜନୈତିକ ଲଢ଼େଇ ଉଦାରପନ୍ଥୀ ବୁର୍ଜୁଆ (ସମ୍ଭ୍ରାନ୍ତ)ମାନଙ୍କର କାମ । ଏମାନଙ୍କୁ 'ଅର୍ଥଶାସ୍ତ୍ରୀ' କୁହାଯାଏ । ଏହି ଅର୍ଥଶାସ୍ତ୍ରୀମାନେ ଜାରଶାହୀ ଶାସନ ବିରୁଦ୍ଧରେ, ପୁଞ୍ଜିବାଦ ଧ୍ୱଂସରେ ଶ୍ରମୀ ମଜଦୁରର କ୍ଷମତା ହାସଲ ଲାଗି ଲଢ଼େଇକୁ ନାପସନ୍ଦ କଲେ । ପ୍ରକୃତପକ୍ଷରେ ଏମାନଙ୍କର ମଧ୍ୟ ସମର୍ଥକ ରହିଲେ । ସୁବିଧାବାଦୀ ବାର୍ଣ୍ଣଷ୍ଟାଇନ୍‌ଙ୍କର ସମର୍ଥକମାନେ ଅର୍ଥଶାସ୍ତ୍ରୀଙ୍କର ସମର୍ଥକ ହେଲେ । ତେଣୁ ରୁଷ୍ ଓ ସାରା ପୃଥିବୀ କ୍ଷେତ୍ରରେ ମାର୍କ୍ସବାଦର ଏଭଳି ଶତ୍ରୁଙ୍କ ବିରୁଦ୍ଧରେ ଲେନିନ୍ ପ୍ରାଣପଣେ ଲଢ଼ି ଏମାନଙ୍କର ଜାରିକୁ ପଦାରେ ପକାଇଦେଲେ ।

'ଇସ୍କ୍ରା' ବୋଲି ଖବର କାଗଜ ଲେନିନଙ୍କର ଏହାଲାଗି ପ୍ରଚାର ହତିଆର ହେଲା । କେବଳ ଅର୍ଥଶାସ୍ତ୍ରୀ ନୁହେଁ, ପରେ ମେନ୍‌ସେଭିକ୍ ଓ

Digitized by srujan ka@gmail.com

ସୋଷିଆଲିଷ୍ଟ ଡେମୋକ୍ରାଟମାନଙ୍କ ଭିତରେ 'ଇସ୍କ୍ରା' ବା 'ଅଗ୍ନିସ୍ଫୁଲିଙ୍ଗ' କଂଗ୍ରେସର ପ୍ରଥମେ ବ୍ୟବହୃତ ହେଲା । ଏହି ସମୟରୁ ତେଣୁ 'ଇସ୍କ୍ରାପନ୍ଥୀ' କୁହାଯାଏ ।

ଶ୍ରମିକ ଆନ୍ଦୋଳନ ଓ ରୁଷର ବୈପ୍ଳବିକ ଆନ୍ଦୋଳନକୁ ଏହି ସୁବିଧାବାଦୀମାନେ ଯେତେ ଦମନ ବା ଅକାମୀ କରିବାକୁ ଉଦ୍ୟମ କଲେ, ରୁଷିଆ ମଜଦୁର ଆନ୍ଦୋଳନ ବଢ଼ି ଚାଲିଲା—୧୯୦୧ ଠାରୁ ୧୯୦୪ ପର୍ଯ୍ୟନ୍ତ ମସ୍କୋ, ସେଣ୍ଟପିଟର୍ସବର୍ଗ, ଓଡେସା, ବାକୁ, କିଏଭ୍, ଏକାଟେରିନୋସ୍ଲାଭ୍ ପ୍ରଭୃତି ଅନେକ ସହରରେ ମଜଦୁରମାନେ ଧର୍ମଘଟ କଲେ । ସବୁ ଜାଗାରେ ସମାଜତନ୍ତ୍ରୀ କର୍ମୀଗୋଷ୍ଠୀ ଏହି ଆନ୍ଦୋଳନର ପରିଚାଳନା କଲେ ।

ଲେନିନ୍ 'ରୁଷରେ ପୁଞ୍ଜିବାଦ ବିକାଶର ଇତିହାସ', 'ସମାଜତନ୍ତ୍ରୀ-ମାନଙ୍କର କର୍ତ୍ତବ୍ୟ' ଓ 'କ'ଣ କରିବା ଉଚିତ' ପ୍ରଭୃତି ପୁସ୍ତକ ଓ ପୁସ୍ତିକା-ମାନ ଲେଖି ଓ 'ଇସ୍କ୍ରା'କୁ ଅନେକ ପ୍ରାଦେଶିକ ଭାଷାରେ ଛପାଇ ରୁଷ ମଜଦୁର ଆନ୍ଦୋଳନକୁ ଏକ ବୈପ୍ଳବିକ ଧାରାରେ ଚଳାଇଲେ ।

ଲେନିନ୍ ଓ ତାଙ୍କର ସହକର୍ମୀମାନେ ନିର୍ବାସନରୁ ଫେରି ଜାରଶାହୀ ଗୁଇନ୍ଦା ଓ ଗୁଣ୍ଡାଙ୍କ ଉପଦ୍ରବରେ ରୁଷରେ ରହି ପାରିଲେ ନାହିଁ । ବିଦେଶରେ ଥାଇ ସେ ରୁଷ ବିପ୍ଳବକୁ ପରିଚାଳନା କରୁଥାନ୍ତି ।

୧୯୦୩ ମସିହାରେ ସମାଜତନ୍ତ୍ରୀଦଳର ଦ୍ୱିତୀୟ ବୈଠକ ଲଣ୍ଡନରେ ବସିଲା । ଗୋଟିଏ ପାଖରେ ରୁଷରେ ବିପ୍ଳବ ଅବସ୍ଥା ଘନେଇ ଆସୁଛି । ଠିକ୍ ଏତିକିବେଳେ ରୁଷ ସମାଜତନ୍ତ୍ରୀ ଦଳରେ ଦୁଇଟି ମତବାଦ ଦେଖାଗଲା ।

ଗୋଟିଏ ମତବାଦ କହିଲା ଯେ, ବୁର୍ଜୁଆ ( ସମ୍ଭ୍ରାନ୍ତ ସଂପ୍ରଦାୟ ) ହିଁ ବିପ୍ଳବର ନେତା ହେବେ ଓ ଶ୍ରମିକ ଶ୍ରେଣୀ ବୁର୍ଜୁଆଶ୍ରେଣୀ ଅଧୀନରେ ରହି ବିପ୍ଳବରେ ଭାଗ ନେବେ । ଏହି ମତବାଦୀମାନେ କହିଲେ ଯେ, ପାର୍ଟି

Digitized by srujan ka@gmail.com

ଅନୁଷ୍ଠାନର ଯିଏ କେହି ସମର୍ଥନ କରିବା ସେ ତାକୁ ପାର୍ଟିର ସଭ୍ୟଶ୍ରେଣୀ-ଭୁକ୍ତ କରାଯିବ ।

ମାତ୍ର ଲେନିନ୍ ଓ ତାଙ୍କ ସମର୍ଥକମାନେ ଏହାର ଘୋର ବିରୋଧ କଲେ । ଲେନିନ୍ କହିଲେ, ଋଷ ବିପ୍ଳବରେ ମଜଦୁରଶ୍ରେଣୀ, କୃଷକ ଶ୍ରେଣୀ ସହିତ ଏକତା ବାନ୍ଧି ବିପ୍ଳବର ନେତୃତ୍ୱ ନେବେ ଓ ପାର୍ଟି ସଂଗଠନର ସଭ୍ୟ କେବଳ ପାର୍ଟିକୁ ମାନିନେଲେ ଯଥେଷ୍ଟ ହେବ ନାହିଁ; ତାହାକୁ କୌଣସି ନା କୌଣସି ଖୋଲାଖୋଲି ଅନ୍ଦୋଳନରେ କାର୍ଯ୍ୟ କରିବାକୁ ହେବ ।

ଲେନିନଙ୍କ ମତବାଦର ଜୟ ହେଲା । ସେହିଦିନଠାରୁ ଲେନିନ୍-ପନ୍ଥୀମାନେ ବଲ୍‌ଶେଭିକ୍ ନାମରେ ଅଭିହିତ ହେଲେ । ଅନ୍ୟମାନଙ୍କୁ ମେନ୍‌ଶେଭିକ୍ କୁହାଗଲା ।

ସେହିଦିନଠାରୁ ଋଷ ସମାଜତନ୍ତ୍ରୀ ଦଳ ଭିତରେ ଦୁଇଟି ମତବାଦ କାମ କଲେ । ଏଥି ଉପରେ ଇତିହାସ ଏଣିକି ଏଇ ଦୁଇଟି ମତବାଦରୁ କେଉଁଟି ଠିକ୍, ତାହା ବାଛି ସାବ୍ୟସ୍ତ କଲା । ଟ୍ରଟ୍‌ସ୍କି, ମାର୍ଟୋଭ୍ ପ୍ରଭୃତି ଦ୍ୱିତୀୟ କଂଗ୍ରେସଠାରୁ ଲେନିନ୍‌ଙ୍କର ଏହି ନୀତି ଉପରେ ବିରୋଧ କଲେ ।

କାଉତ୍‌ସ୍କିଙ୍କର ନବକ ଶାଖାରେ ସବୁଠି ସୁବିଧାବାଦୀ ବ୍ରଜକଡ଼ିକ ଦଳ ଓ ମତବାଦ ଜନ୍ମ ଲାଭ କରିଲା । ଉଦୟୀ ଗାର ମଜଦୁର ଶ୍ରେଣୀ ଜଗତର ବୈପ୍ଳବିକ ଆନ୍ଦୋଳନକୁ କଷଟି ପଥର କରି ଧରନ୍ତୁ ଅବ ସାଥୀ ଗେପନଙ୍କର ଇକୋନୋମିଷ୍ଟ୍ ଅନ୍ଦୋଳନ, ନରୋଦବାଦ, କାନୁନୀମାର୍କ୍ସ୍-ବାଦ, ଅର୍ଥଶାସ୍ତ୍ରୀ ମାର୍କ୍ସ୍‌ବାଦ ପ୍ରଭୃତିକୁ ପରଖିନେଲେ । ସେମାନେ ହାର ମାନିଲେ, ମଜଦୁର ଶ୍ରେଣୀର ହେଲା ପେଟର ବିପ୍ଳବ ଝଙ୍କାର ପାଖରେ । ତଥାପି ସୁବିଧାବାଦୀ ବଞ୍ଚି ରହିଲେ । ଏଣିକି ଯାଇ ପଡ଼ିଲେ ମେନ୍‌ଶେଭିକ୍, ସୋସାଲିଷ୍ଟ୍ ରିଭୋଲ୍ୟୁସନାରୀ, ବୁଣ୍ଡିଷ୍ଟ୍ ପ୍ରଭୃତିଙ୍କର । ଏମାନଙ୍କ ମରିବା ନିଶ୍ଚୟ ହେଲା ଅତି କଷ୍ଟସାଧ୍ୟ ହେଲା ଅବଶ୍ୟ—କିନ୍ତୁ ତାଙ୍କୁ ମାରିବାକୁ ହିଁ ପଡ଼ିଲା । ତା ଛଡ଼ା ଶ୍ରମୀ ମଜଦୁର ଆଗରେ ସେମାନଙ୍କର ଅନ୍ୟ ରାହା କିଛି ନ ଥିଲା । ନ ରହିବାର କଥା ମଧ୍ୟ ।

Digitized by srujan ka@gmail.com

## ୧୯୦୫ ବିପ୍ଳବ

ଏହି ପ୍ରଚ୍ଛଦପଟ୍ଟ ଯୋଗେ ୧୯୦୫ର ଶୁଭ ଆଗମନ ହେଲା । ରୁଷର ବିପ୍ଳବୀ ମଜଦୁର ଶ୍ରେଣୀ ଏକ ନୂଆ ବିପ୍ଳବର ଧ୍ୱଜା ଧରି ସବୁରି ଆଗରେ ଚାଲିଲେ । ଶ୍ରମିକଶ୍ରେଣୀ ଏଣିକି କେବଳ ନିଜ ରୁଟିପାଇଁ ଲଢ଼େଇ କରିବା ସାର ନ ମଣି ରାଜନୀତିକ ଲଢ଼େଇରେ ସାମିଲ ହେଲେ । ଜାରଶାସନକୁ ଧ୍ୱଂସ କରିବାକୁ ମସ୍କୋ, ଓ୍ୟାରସା, ରିଗା, ବାକୁ ପ୍ରଭୃତି ସହରର ବୀର ମଜଦୁର ଧର୍ମଘଟ, ଶୋଭାଯାତ୍ରା ଏମିତିକି ସଶସ୍ତ୍ର ଅଭ୍ୟୁତ୍ଥାନରେ ବ୍ୟାପୃତ ରହିଲେ । ରକ୍ତ ରବିବାରରେ ରକ୍ତ ପିପାସୁ ରାକ୍ଷସ ଜାର୍ ଯେଉଁ ରକ୍ତ ନେଲା ତା ଫଳରେ ମଜଦୁର ଶ୍ରେଣୀ ନିଜର ମୁକ୍ତିଲାଗି, ରୁଷ ଜନତାର ମୁକ୍ତିଲାଗି ଅଜସ୍ର ରକ୍ତ ଦେବାକୁ ତିଆରି ହେଲେ ।

ଲେନିନ୍ ଓ ବଲ୍‌ସେଭିକ୍‌ଙ୍କ ଗଣନା ଅକ୍ଷରେ ଅକ୍ଷରେ ସତ ହେଲା । ମଜଦୁର ପାଖକୁ କୃଷିଶ୍ରେଣୀ ବିପ୍ଳବ ଧ୍ୱଜା ଧରି ଆଗକୁ ବାହାରି ପଡ଼ିଲେ । ୧୯୦୦ ଠାରୁ ୧୯୦୪ ପର୍ଯ୍ୟନ୍ତ ଚାରି ବର୍ଷ ଭିତରେ ରୁଷର ଅତ୍ୟାଚାରିତ ଗାଁ ଗହଳରେ ମଣିଷଶ୍ରେଣୀ କୃଷିଶ୍ରେଣୀ ୬୭୦ଟି ବିଦ୍ରୋହ କରିଥିଲେ । ସେଥିରୁ ୪୦୧ଟି ବିଦ୍ରୋହ କେବଳ ଜମିଦାର ବିରୁଦ୍ଧରେ ଓ ୧୯୬ଟି ଖୋଦ ଜାର ସରକାର ବିରୁଦ୍ଧରେ । ସହରର ମଜଦୁର ଆନ୍ଦୋଳନ ୧୯୦୫ରେ ଏତେ ଶକ୍ତିଶାଳୀ ହୋଇଉଠିଲା ଯେ ତାର ପ୍ରଭାବରେ କେବଳ ୧୯୦୫ ରେ ଆହୁରି 'କୃଷି ବିଦ୍ରୋହ' ହୋଇ ଉଠିଲା ଜାରକୁ ଥରହର କରିଦେଲା ।

Digitized by srujan ka@gmail.com

ସହରରେ ମଜଦୁର ଓ ପଲ୍ଲୀ ଗାଁ ମାନଙ୍କରେ କୃଷୀଙ୍କର ଏଇ ଅସନ୍ତୋଷର ଢେଉ ଯାଇ ପହଞ୍ଚିଲା ସୈନ୍ୟବାହିନୀ ନିକଟରେ । ସୈନ୍ୟବାହିନୀ ଭିନ୍ନ ଜାଗାରେ ବିଦ୍ରୋହ କରି ଉଠିଲେ । ତାଙ୍କର ମରଣ ଦଣ୍ଡ ଘୋଷଣା ହେଲା ।

ଏହିପରି ବିସ୍ଫୋରକ ଅବସ୍ଥାରେ ରୁଷିଆର ଶ୍ରମିକବର୍ଗ ମଧ୍ୟ ପହିଲାର ବିପ୍ଳବ ଡାକରା ଆସିଲା । ରୁଷିଆର ମଜଦୁର ନିଜର ଉତ୍ସବ ଦିନକୁ ସ୍ୱାଗତ ଦେଇ ପାଳିଆସିଛନ୍ତି । ଅଛି ୧୯୦୫ ମସିହାର ମଇ ଦିବସକୁ ଉତ୍ତର ମଜଦୁର ଲକ୍ଷ ଲକ୍ଷ ସଂଖ୍ୟାରେ କାମ ବନ୍ଦକରି ପାଳନ କଲେ । ସଙ୍ଗେ ଶୋଭାଯାତ୍ରାରେ ଉତ୍ତର ଗଗନକୁ ମୁଖରିତ କରିଦେଲେ । ତା'ପର ହତ୍ୟାକାଣ୍ଡ ହେଲା । ଗୁଳିର ଗୁଳିର ସଙ୍ଗୀତ । ମଜଦୁର ଓଲଟି ସ୍ୱରରେ ତାର ଉତ୍ତର ଦେଲେ । ଏହି ଆନ୍ଦୋଳନର ମୁଖ୍ୟ କର୍ତ୍ତା ଥିଲେ ବଲ୍ଶେଭିକ୍ମାନେ ।

ସବୁ ଦେଶର କୃଷୀ ମଜଦୁର ସୈନ୍ୟବାହିନୀ ଗୋଟିଏ ସେନା-ଶ୍ରେଣୀରେ ପରିଣତ ହେଲା ।

କୃଷ୍ଣସାଗରର ନୀଳ ଜଳରେ ଭାସୁଛି ହୋଇ ରୁଷୀୟଙ୍କ 'ପ୍ରିନ୍ସ ପୋଟେମକିନ୍' ନାମକ ଜାହାଜ । ଜୁନମାସ —ଗ୍ରୀଷ୍ମଦିନ । ନାବିକମାନଙ୍କୁ ଖରାପ ଖାଇବାକୁ ଦିଆଯାଉଥିବାରୁ ହଠାତ୍ ସେମାନେ ବିଦ୍ରୋହ କରି ଉଠିଲେ । ତାପରେ ଅସଭ୍ୟ ଅଫିସର ହୁକୁମ ଦେଲେ କେତେଜଣ ନାବିକଙ୍କୁ ଗୁଳି କରିଦେବାକୁ ।

ବନ୍ଧୁ ଗୁଳି । ଗୁଳି ବଦଳରେ ଗୁଳି । ସେନାପତିମାନଙ୍କୁ ଅଦେଖା କରି ସେମାନେ ବନ୍ଦୀ କରିଦେଲେ । ବିଦ୍ରୋହୀ ନାବିକ ତା'ପରେ ଅଫିସର ସବୁ ଅତ୍ୟାଚାରୀ ବନ୍ଦୀଙ୍କୁ କୃଷ୍ଣସାଗରର ଅତଳ ଜଳରେ ଫିଙ୍ଗିଦେଇ 'ଲାଲଝଣ୍ଡା'କୁ ଜାହାଜରେ ଉଡ଼ାଇଦେଲେ । ଅନ୍ୟ କେତେକ ଜାହାଜ ମଧ୍ୟ ଏ ବିଦ୍ରୋହରେ ଯୋଗ ଦେଲେ ।

Digitized by srujan ka@gmail.com

ଏହି ବିଦ୍ରୋହର ନେତୃତ୍ୱ କେବଳ ବଲ୍‌ସେଭିକ୍‌ମାନଙ୍କ ହାତରେ ନ ଥିଲା । କେତେକ ମେନ୍‌ସେଭିକ୍ ଓ ସୋସିଅଲିଷ୍ଟ୍ ରିଭଲ୍ୟୁସନାରୀ ଏଥିରେ ମୂର୍ଖତା [illegible] କରିବାରୁ ଏହି ଜାହାଜଗୁଡ଼ିକ ନାଟ ବିଦ୍ରୋହକୁ ଠିକ୍ ବାଟରେ ଚଲାଇ ନ ପାରି ଶେଷରେ ଆତ୍ମସମର୍ପଣ କଲେ । ଜାର ଗୁଳିଚୋଟରେ ସେମାନଙ୍କର ପ୍ରାଣ ନେଲା । କୃଷ୍ଣସାଗରର ବିଦ୍ରୋହୀ ନାବିକମାନଙ୍କର ପରାଜୟ ହେଲା ।

କିନ୍ତୁ ଉଷ୍ୱାପ୍ଳବରେ ନାବିକ ବିଦ୍ରୋହ ଏକ ନୂଆ ଅବସ୍ଥା ସୃଷ୍ଟି କଲା । ବିପ୍ଳବର ରୂପାନ୍ତର ହେଲା । ଏ ବିପ୍ଳବ ଥମିବାର ନୁହେଁ, ଏହାହିଁ ଶିକ୍ଷା ହେଲା ବଲ୍‌ସେଭିକ୍‌ମାନଙ୍କର ।

ଜୁନ ମାସର ପଟେମ୍‌କିନ୍‌ପରେ ନଭେମ୍ବର ମାସରେ ଆଉ ଏକ ବଡ଼ଟ ନୌବିଦ୍ରୋହ । ସ୍ଥାନ କୃଷ୍ଣସାଗରର ସେବାଷ୍ଟୋପୋଲ ବନ୍ଦର । ବନ୍ଦରରେ ଶ୍ରମିକ ଅଞ୍ଚଳ ଓ ଗାଁଗହଳରେ ଗୃହୀ ବିଦ୍ରୋହର ଜୁଆର । ଜାହାଜ ଛଡ଼ା ସୈନ୍ୟ ଓ ନୌବାହିନୀ ଭିତରେ ବିଦ୍ରୋହର ସୂତ୍ରପାତ କରୁଥାଏ ।

୧୯୦୫ ନଭେମ୍ବର ୨୦ ତାରିଖର ସକାଳ । ଦିଗ୍‌ବଳୟରୁ ସୂର୍ଯ୍ୟ ଉଙ୍କିଅଛି କୃଷ୍ଣ ସାଗରର ନୀଳ ତରଙ୍ଗାୟିତ ଜଳରାଶିରେ ଶୁଭ୍ର ଫେଣ ସୃଷ୍ଟି କରୁଛି । ଠିକ୍ ଏତିକିବେଳେ ନୌଅଧ୍ୟକ୍ଷ ପିସାରେଭ୍‌ସ୍କି ଜଗୁଆଳକୁ ହୁକୁମ ଦେଲେ, "ଦେଖ, ଛଉଣୀ ବାହାରକୁ କାହାକୁ ଛାଡ଼ ଦିଅନାହିଁ । ଯେ ଯିବ ତାକୁ ଗୁଳି କର ।"

ପେଟ୍ରୋଭ୍ ବୋଲି ସାଧାରଣ ସୈନିକ, ବନ୍ଧୁକକୁ ଉଠାଇନେଲା; ଗୁଳି କଲା, କୌଣସି ସାଥୀ ସୈନିକକୁ ନୁହେଁ—ଗୁଳିକଲା ସୈନ୍ୟାଧ୍ୟକ୍ଷ ଷ୍ଟେନ୍ ଅଭ ପିସାରେଭ୍‌ସ୍କି ଉପରକୁ । ଷ୍ଟେନ୍ ସେଇଠାରେ ମଲା, ପିସାରେଭ୍‌ସ୍କି ଆହତ ହେଲା ।

Digitized by srujan ka@gmail.com

ପୁଣି ଉପରୁ ହୁକୁମ ଆସିଲା, "ତାକୁ ଗିରଫ କର।" ସେଥର ଉଗ୍ର ସେମାନେ ଗିରଫ କରିବାକୁ ରାଜି ହେଲେ ନାହିଁ। ଶେଷରେ ମାଟ୍ରୋସ୍ ବନ୍ଧୁକ ଫୋପାଡ଼ି ଦେଇ କହିଲା, "ମୋତେ ଗିରଫ କର।" ପେଟ୍ରୋଭ୍ ଗିରଫ ହୁଅନ୍ତେ ସାଥୀ ନାବିକମାନେ ଏକସ୍ବରରେ ଦାବୀ କଲେ, "ପେଟ୍ରୋଭ୍‌କୁ ମୁକ୍ତ କର।" ପେଟ୍ରୋଭ୍ ମୁକ୍ତି ଲଭିଲା ଏବଂ ପେଟ୍ରୋଭ୍‌ର ଗିରଫଦାରୀ ବଦଳରେ ସବୁ ଅଫିସରଙ୍କୁ ନାବିକମାନେ ଗିରଫ କଲେ। ଶେଷରେ ନାବିକମାନେ ଅଫିସରମାନଙ୍କୁ ମୁକ୍ତ ଦେଲେ।

ସାଗର ପରେ ସାଗର ଜାହାଜ ପରେ ଜାହାଜକୁ ଏହି ବିଦ୍ରୋହାଗ୍ନି ବ୍ୟାପିଗଲା। ୧୯୦୬ ମସିହାରେ ବାଲ୍‌ଟିକ୍‌ସାଗରର ସ୍ବେବର୍ଗ ଓ କ୍ରୋନଷ୍ଟାଡଟ୍‌ରେ ମଧ୍ୟ ନୌବିଦ୍ରୋହ ହେଲା।

କିନ୍ତୁ ସବୁ ଜାଗାରେ ଦେଖାଗଲା, ନୌବାହିନୀର ବିଦ୍ରୋହ ସଙ୍ଗଠିତ ରୂପ ନେଇ ନ ପାରିବାରୁ ଫଳସମ୍ମଣ୍ଡିତ ହୋଇପାରୁ ନାହିଁ।

ମାତ୍ର ଦେଶବ୍ୟାପୀ ଧର୍ମଘଟ, ଶୋଭାଯାତ୍ରା, କୃଷକ ବିଦ୍ରୋହ, ସୈନ୍ୟ ଓ ନୌବାହିନୀ ବିଦ୍ରୋହରେ ଜାର୍‌ଙ୍କ ଆସନ କମ୍ପି ଉଠିଲା। ସେ ବାଧ୍ୟ ହୋଇ ଅଗଷ୍ଟ ମାସରେ ଉପରର ଲୋକଙ୍କୁ ପାର୍ଲିଅମେଣ୍ଟ ଶାସନ ଦେବାର ପ୍ରସ୍ତାବ ଘୋଷଣା କଲେ। ଏହି ପାର୍ଲିଅମେଣ୍ଟକୁ "ବୁଲିଗିନ୍ ଡୁମା" କୁହାଯାଏ। ଏହି ଡୁମା ବା ପାର୍ଲିଅମେଣ୍ଟର କୌଣସି କ୍ଷମତା ନ ଥିଲା।

ଏହି ବିପ୍ଳବରେ ରୁଷ ଶ୍ରମିକ ମଜଦୁରଙ୍କର ଚେତନା ଯଥେଷ୍ଟ ବଢ଼ି ଯାଇଥାଏ। ଫଳରେ ସେମାନେ ଏହି ଡୁମାକୁ ପ୍ରତ୍ୟାଖ୍ୟାନ କଲେ ଏବଂ ସଙ୍ଗେ ସଙ୍ଗେ ଦେଶସାରା ଧର୍ମଘଟ ବ୍ୟାପିବାରେ ଲାଗିଲା। ସୈନ୍ୟ ଓ ନୌବାହିନୀରେ ବିଦ୍ରୋହର ସଂଖ୍ୟା ବୃଦ୍ଧି ଘଟିବାକୁ ଲାଗିଲା। ଅକ୍ଟୋବର ୬୦ ତାରିଖରେ ମସ୍କୋରେ ରେଲ୍‌ବାଇ ଧର୍ମଘଟ ଦେଖାଦେଲା। ସାରା ଋଷରେ ସେ ଧର୍ମଘଟ ବ୍ୟାପିଗଲା ଏବଂ ଟେଲିଗ୍ରାଫ ବିଭାଗରେ ମଧ୍ୟ ପୂର୍ଣ୍ଣ ଧର୍ମଘଟ ହୋଇଗଲା।

Digitized by srujan ka@gmail.com

ସଭା ସମିତି ପ୍ରଭୃତିରେ ଯେଉଁ କଟକଣା ଥିଲା ଲୋକେ ତାକୁ ଅମାନ୍ୟ କରି ଖୋଲାଖୋଲି ସଭା ସମିତି ଶୋଭାଯାତ୍ରା କଲେ । ଖବରକାଗଜମାନେ ମନଇଚ୍ଛା ବିପ୍ଳବର ବାର୍ତ୍ତା ପ୍ରଚାର କଲେ । ରେଲ ଓ ଡାକ ଧର୍ମଘଟ ଫଳରେ ସରକାର ଏକାବେଳକେ ଅଚଳ ହୋଇପଡ଼ିଲା ।

ଜାର୍ ବାଧ୍ୟ ହୋଇ ବୁଲ୍‌ଗିନ୍ ଡୁମା ପ୍ରସ୍ତାବକୁ ଫେରସ୍ତ ନେଲେ । ଅକ୍ଟୋବର ୩୦ ତାରିଖ ଘୋଷଣାରେ ଜାର୍ ଡୁମାକୁ କେତେକ ଅଧିକ କ୍ଷମତା ଦେଲେ । ତେବେ ବି ଶ୍ରମିକମାନେ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । କିନ୍ତୁ ସୁବିଧାବାଦୀ ଉଦାରପନ୍ଥୀମାନେ ପ୍ରକୃତ କ୍ଷମତା ପାଇଗଲେ ବୋଲି ଡିଣ୍ଡିମ ପିଟିଲେ ।

ଏହି ବୈପ୍ଳବିକ ଆନ୍ଦୋଳନ ଭିତରେ ମଜଦୁରମାନେ 'ଡୁମା'ର ରୂପ କ'ଣ ତାହା ବେଶ୍ ବୁଝିପାରିଥିଲେ । ସେମାନେ ଜାଣିଥିଲେ ଯେ ବିପ୍ଳବ ବିନା ଅସଲ କ୍ଷମତା ସେମାନଙ୍କ ହାତକୁ ଆସି ପାରିବ ନାହିଁ । ଏହି ବୈପ୍ଳବିକ ଆନ୍ଦୋଳନ ଗୋଟିଏ ନୂଆ ଜିନିଷ ମଜଦୁର ଶ୍ରେଣୀ ହାତରେ ଦେଇଗଲା । ଇଭାନୋଭୋ—ଭୋଜ୍‌ନେସେନସ୍କ ନାମକ ସହରର ଶ୍ରମିକମାନେ ଧର୍ମଘଟ କଲାବେଳେ ନିଜ ନିଜ ପ୍ରତିନିଧି ବାଛି ଗୋଟିଏ ସୋଭିଏଟ୍ ଗଢ଼ିଥିଲେ । ଏହା ଦେଖାଦେଖି ସେପ୍ଟେମ୍ବର ମାସ ଅନ୍ତରୁ ମସ୍କୋର ବଡ଼ ବଡ଼ ଶିଳ୍ପମାନଙ୍କରେ ସୋଭିଏଟ୍‌ମାନ ଗଢ଼ା ହୋଇଗଲା । ନଭେମ୍ବର ମାସରେ ସେଣ୍ଟପିଟର୍ସବର୍ଗ ସୋଭିଏଟ୍‌ର ନେତୃତ୍ୱରେ ଧର୍ମଘଟ ପରିଚାଳିତ ହେଲା । ଯଦିଓ ଜାର୍‌ଶାହୀ ପୁଲିସ ଅଳ୍ପ ଦିନରେ ଏ ସୋଭିଏଟ୍‌ଗୁଡ଼ିକ ଉପରେ ଆକ୍ରମଣ କଲା ତଥାପି ଏହି ସୋଭିଏଟ୍ ଋଷ ବିପ୍ଳବରେ ଲୋକଙ୍କ ହାତରେ ଏକ ନୂଆ ଶାସନ ସଂସ୍ଥା ଦେଇଗଲା ।

କେବଳ ଲେନିନ୍ ଓ ବଲ୍‌ସେଭିକ୍‌ମାନେ ଏହି ସୋଭିଏଟ୍‌ର ଗୁରୁତ୍ୱ କ'ଣ ଜାଣିଥିଲେ ଏବଂ ଏହାକୁ ଖୁବ୍ ମହତ୍ତ୍ୱ ଦେଇ ବିଚାର କରୁଥିଲେ ।

ଋଷ ବିପ୍ଳବର ଅଗ୍ରଗାମୀ ନେତା ଲେନିନ୍ ନିର୍ବାସନରୁ ୧୯୦୫ ନଭେମ୍ବରରେ ଫେରି ବିପ୍ଳବକୁ ପରିଚାଳନା କଲେ ।

Digitized by srujan ka@gmail.com

ଏତିକବେଳେ ଟ୍ରାନ୍ସ୍‌କକେସିଅ ଅଞ୍ଚଳରେ ଷ୍ଟାଲିନ୍ ବାକୁ ଓ ବାଟୁମ୍ ପ୍ରଭୃତି ଶିଳ୍ପାଞ୍ଚଳସ୍ଥ ମଜଦୁର ଶ୍ରେଣୀର ପ୍ରିୟତମ ନେତା ହିସାବରେ ବିପ୍ଳବର ପରିଚାଳନା କରୁଥାନ୍ତି । ଲେନିନ୍‌ଙ୍କ ସହିତ ତାଙ୍କର ବ୍ୟକ୍ତିଗତ ପରିଚୟ ହୋଇ ନ ଥିଲେହେଁ ଚିଠିପତ୍ର ଆଦାନ ପ୍ରଦାନ ଓ ଲେଖା-ଲେଖିରେ ଦୁହିଁଙ୍କ ଭିତରେ ଏକ ବୈପ୍ଳବିକ ବନ୍ଧୁତା ଗଢ଼ି ଉଠିଥାଏ ।

୧୯୦୫ ଡିସେମ୍ବର ମାସରେ ବଲ୍‌ସେଭିକ୍‌ମାନେ ଫିନ୍‌ଲାଣ୍ଡରେ ଏକ ସମ୍ମିଳନୀ କଲେ । ଭାବୀ ବିପ୍ଳବକୁ ପରିଚାଳନା କିପରି ଭାବେ କରାଯିବ ତାହାହିଁ ଥିଲା ଏ ସମ୍ମିଳନୀର ମୁଖ୍ୟ ଆଲୋଚନାର କଥା । ଏଇଠି ପ୍ରଥମେ ଲେନିନ୍‌ଙ୍କ ସଙ୍ଗେ ଷ୍ଟାଲିନ୍‌ଙ୍କର ସାକ୍ଷାତ ହେଲା ।

ଏଇଠାରେ ବଲ୍‌ସେଭିକ୍ ଓ ମେନ୍‌ସେଭିକ୍‌ମାନଙ୍କର ଏକତା ଏବଂ ପ୍ରଥମ ଡୁମାକୁ ବୟକଟ୍ କରିବା ନୀତି ଧାର୍ଯ୍ୟ ହେଲା । ଅନ୍ୟ କୌଣସି ନିଷ୍ପତ୍ତି ନେବା ପୂର୍ବରୁ ମସ୍କୋରେ ସଶସ୍ତ୍ର ବିପ୍ଳବ ଆରମ୍ଭ ହୋଇଗଲା । ଲେନିନ୍ କାଳ ବିଳମ୍ବ ନ କରି ସାଥୀମାନଙ୍କୁ ସଶସ୍ତ୍ର ବିପ୍ଳବର ପରିଚାଳନା ଲାଗି ପଠାଇଦେଲେ ।

ମସ୍କୋ ସୋଭିଏଟ୍ ଏକ ବୈପ୍ଳବିକ ସରକାର ଗଢ଼ି ନିଜ ହାତକୁ କ୍ଷମତା ନେଇଗଲା । ୫୦ ଦିନର ଅଳ୍ପ ଭିତରେ ମସ୍କୋ ସୋଭିଏଟ୍ ଭବିଷ୍ୟତରେ ସୋଭିଏଟ୍‌ଗୁଡ଼ିକ କି ଦାୟ ବହିବେ ତାହାର ଆଭାସ ଦେଇଗଲା ।

ଧର୍ମଘଟ କରିବାର ସମୁଦାୟ ସ୍ୱର ନେଇ ନଭେମ୍ବର ଆରମ୍ଭରେ ମସ୍କୋସୋଭିଏଟ୍ ଖବରକାଗଜର ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିଦେଲା । ନଭେମ୍ବର ୧୩ ତାରିଖରେ ଶ୍ରମିକମାନଙ୍କ ଲାଗି ଅଠଘଣ୍ଟା ଦିନ ଘୋଷଣା କଲା । ରେଲ ଓ ତାର୍ ଧର୍ମଘଟକୁ ସମର୍ଥନ୍ ନାବିକବିଦ୍ରୋହୀମାନଙ୍କୁ ସାହାଯ୍ୟ ପ୍ରଭୃତି କାର୍ଯ୍ୟ କରି ମସ୍କୋସୋଭିଏଟ୍ ଏକ ଗୁରୁତ୍ୱପୂର୍ଣ୍ଣ

Digitized by srujan ka@gmail.com

ଘୋଷଣାରେ ଟିକସ ଦେବାକୁ ମନା କରିଦେଲେ ଓ ବିଦେଶୀ ପୁଞ୍ଜିପତି-
ମାନଙ୍କର ଋଣ ବାତିଲ କରାଯିବ ବୋଲି ଘୋଷଣା କଲେ ।

ମସ୍କୋ ସୋଭିଏଟ୍‌ର ଏହି ସଂଗ୍ରାମଶୀଳ କାର୍ଯ୍ୟକ୍ରମ ସଙ୍ଗେ ସେଣ୍ଟ ପିଟର୍ସବର୍ଗ ସୋଭିଏଟ୍ ତାଳ ଦେଇ ପାରିଲା ନାହିଁ । କାରଣ ପିଟର୍ସବର୍ଗ ସୋଭିଏଟର ନେତୃତ୍ୱ ମେନ୍‌ସେଭିକ୍ ଓ ଟ୍ରଟସ୍କିଙ୍କ ହାତରେ ଥିଲା । ସଶସ୍ତ୍ର ବିପ୍ଳବ ଯେ ଏକ କଳା ଏବଂ ସେଥିପାଇଁ ଉପଯୁକ୍ତ ସମୟରେ ଉପଯୁକ୍ତ ନେତୃତ୍ୱ ନ ଦେଲେ ବିପ୍ଳବର ଯେ ପରାଜୟ ଘଟେ ଏକଥା ମେନ୍‌ସେଭିକ୍‌ମାନେ ଜାଣନ୍ତି ନାହିଁ । କେବଳ ବିପ୍ଳବର ଫାଙ୍କା ଆବାଜ ଦେଇ ଲୋକଙ୍କୁ ଭୁଲ ଅବସ୍ଥାରେ ରଖିବା ଥିଲା ତାଙ୍କର କାମ ।

ତେଣୁ ସଶସ୍ତ୍ର ବିପ୍ଳବରେ ମସ୍କୋ ଅତି ଗୌରବମୟ ଭାଗ ନେଲେ ମାତ୍ର ପିଟର୍ସବର୍ଗ ସୋଭିଏଟ୍ ସଶସ୍ତ୍ର ବିପ୍ଳବ ଉପଯୁକ୍ତ ହୋଇପାରିଲା ନାହିଁ ।

ନଭୋରୋସିସ୍କି, ସୋଚେଭମୋସ୍କୋ, ସେବାସ୍ତୋପୋଲ, କ୍ରାସନୋୟାରସ୍କ ପ୍ରଭୃତି ସହର ଓ ଡୋନେଜ୍‌ବାସ୍ ପ୍ରଭୃତି ଅଞ୍ଚଳର ମାନେ ମଧ୍ୟ ସଶସ୍ତ୍ର ଜନତା ଜାରଶାସନକୁ ମୂଳୋତ୍ପାଟନ କରିବାପାଇଁ ବିପ୍ଳବ [illegible] ।

ଜାରଶାହୀ ଶାସନ ଚରମ ଭାବରେ ଅତ୍ୟାଚାର ଚଳାଇଲା । ହଜାର ହଜାର ସଂଗ୍ରାମୀଙ୍କ ଜୀବନ ନେଇ ଜାର ସନ୍ତୁଷ୍ଟ ହେଲା ନାହିଁ । ମସ୍କୋ, ପିଟର୍ସବର୍ଗ ପ୍ରଭୃତିରେ ଗୁଳି ବର୍ଷାର ସୁଅ ଛୁଟିଲା । ଲୁଣ୍ଠନ, ଗୃହଦାହ ପ୍ରଭୃତି ସବୁପ୍ରକାର ଅତ୍ୟାଚାରର ଅସ୍ତ୍ର ପ୍ରୟୋଗ କରି ଜାରଶାସନ ବିପ୍ଳବର ଗତିକୁ ରୋଧ କରିଦେବାରେ ସଫଳକାମ ହେଲା ।

୧୯୦୫ ଡିସେମ୍ବର ମାସର ଏହି ସଶସ୍ତ୍ର ବିପ୍ଳବ ଉପରେ ଜାରର ନିଦାରୁଣ ଅକଥନୀୟ ଅତ୍ୟାଚାର ଇତିହାସରେ ଏକ ନୂଆ ଅଧ୍ୟାୟ ଯୋଡ଼ିଦେଲା । କିନ୍ତୁ ସବୁ ଅତ୍ୟାଚାର, ଲାଞ୍ଛନା ଯାତନା ସହି କେବଳ ସହର ଶ୍ରମିକ ଶ୍ରେଣୀ ନୁହେଁ ସହର ବାହାର ଚାଷୀମାନେ ମଧ୍ୟ ଜାରଶାସନକୁ ଧ୍ୱଂସ କରିବାକୁ ବିପ୍ଳବରେ ମୁଖ୍ୟ ଭାଗ ନେଲେ । ତାହାର ଫଳରେ

Digitized by srujan ka@gmail.com

ଫିନ୍‌ଲାଣ୍ଡ୍‌କୁ ଛାଡ଼୍ କେତେକ ଅନ୍ୟମାନଙ୍କରେ ସ୍ୱାୟତ୍ତଶାସନ ଦେବାକୁ ବାଧ୍ୟ ହୋଇଥିଲେ ।

ଋଷସାମ୍ରାଜ୍ୟବାଦର ଏ ଦୁରବସ୍ଥାରେ ଇଂଲଣ୍ଡ ସାମ୍ରାଜ୍ୟବାଦୀମାନେ ବଡ଼ ଅତଙ୍କିତ ହୋଇପଡ଼ିଲେ ଏବଂ ତାଙ୍କ, ବନ୍ଧୁର ଠିକା ଋଣ ଦେଇ ଋଷ ବାସ୍ତବରୁ ପତନର ଦେବା ପ୍ରତି ନଜର୍ ଦେଲେ ।

Digitized by srujan ka@gmail.com

# ପରାଜୟପରେ ପ୍ରତିକ୍ରିୟା

୧୯୦୫ ଡିସେମ୍ବର ମାସରେ ସଶସ୍ତ୍ର ବିଦ୍ରୋହର ପରାଜୟ ହେଲା ଏବଂ ଅତ୍ୟାଚାରର କ୍ଷଣିକ ବିରାମ ହେଲା ସତ; କିନ୍ତୁ ବିପ୍ଳବର ନିଆଁ ଲିଭିଗଲା ନାହିଁ । ରୁଷ୍ ଜନସାଧାରଣ, ରୁଷ୍‌ର କୃଷି ମଜଦୁର ଓ ସୈନ୍ୟବାହିନୀ, ଭିତର ଭିତର ଦଳବଦ୍ଧ ଭାବେ ବେଳେବେଳେ ଖଣ୍ଡଯୁଦ୍ଧ ଚଳେଇଲେ, ସେଥିରେ ଯେ ରକ୍ତ ଦେଲେ ତାର ସୀମା ନାହିଁ ।

ମାତ୍ର ୧୯୦୭ ଠାରୁ ରୁଷ୍-ବିପ୍ଳବର ଜ୍ୱାଳା ମଉଳିଗଲା ପରି ଜଣାଗଲା ଏବଂ ତା ସଙ୍ଗେ ସଙ୍ଗେ ଜାର ଶାସନ ଅକଥନୀୟ ଅତ୍ୟାଚାର ଆରମ୍ଭ କରି କ୍ରମେ ଶକ୍ତିଶାଳୀ ହୋଇ ଉଠିଲା ।

ବଲ୍‌ଶେଭିକ୍ ଓ ମେନ୍‌ଶେଭିକ୍‌ମାନଙ୍କ ଭିତରେ ମତଭେଦ ଦିନକୁଦିନ ଅଧିକ ସୃଷ୍ଟି ହୋଇଉଠିଲା । ଯଦିଓ ଦୁହେଁ ଗୋଟିଏ ଦଳରେ ଏ ପର୍ଯ୍ୟନ୍ତ ଥାଆନ୍ତି ତଥାପି ମତଭେଦ ଏତେ ଟାଣ ହେଲା ଯେ ସେମାନେ ଅଲଗା ଅଲଗା ଦୁଇଟି ଦଳ ପରି କାର୍ଯ୍ୟ କରିବାକୁ ଆରମ୍ଭ କଲେ ।

ଏବେ ପ୍ଲେଖାନଭ୍ ରୁଷ୍‌ରେ ମାର୍କ୍‌ସ୍‌ବାଦର ପ୍ରଥମ ଓ ପ୍ରଧାନ ପ୍ରବକ୍ତା ଥିଲେ । ମାତ୍ର ବିପ୍ଳବର ପରାଜୟପରେ ମେନ୍‌ଶେଭିକ୍ ପ୍ଲେଖାନଭ୍

Digitized by srujan ka@gmail.com

କହି ବୁଝଲେ ଯେ ଶ୍ରମିକମାନେ ତାତକ୍ଷଣ ଅର ଧର ବିପ୍ଳବ କରିବା ଉଚିତ ନଥିଲ । ମାତ୍ର ଲେନିନ୍, ଷ୍ଟାଲିନ୍ ଓ ବଲସେଭିକ୍‌ମାନେ ଶ୍ରମିକଙ୍କର ସଶସ୍ତ୍ର ବିପ୍ଳବକୁ ଅତି ମହତ୍ତ୍ୱ ଦେଲେ ଏବଂ କହିଲେ ଯେ, ରୁଷ୍‌ରେ ଗଣତନ୍ତ୍ର, ସ୍ୱାଧୀନତା ଓ ସାମ୍ୟବାଦ ପ୍ରତିଷ୍ଠା କରିବାର ଏକମାତ୍ର ବାଟ ହେଉଛି, କୃଷୀ ମଜଦୁର ଓ ସୈନ୍ୟବାହିନୀର ସଶସ୍ତ୍ର ବିପ୍ଳବ । ତାହା ଛଡ଼ା ଅନ୍ୟ ପନ୍ଥା ନାହିଁ । ଅନ୍ୟ ପନ୍ଥା ବିଶ୍ୱାସଘାତକର ପନ୍ଥା; ଅନ୍ୟ ପନ୍ଥା ଜାର୍‌ଶାସନ ଓ ପୁଞ୍ଜିବାଦକୁ ଘଣ୍ଟ ଘୋଡ଼େଇ ବଞ୍ଚେଇ ରଖିବାର ପନ୍ଥା ।

ଲେନିନ୍ ଦଳର ଏକତା ରକ୍ଷା କରିବାକୁ ଚାହୁଁଥିଲେ ସତ, ମାତ୍ର ବଲ୍‌ସେଭିକ୍ ଓ ମେନ୍‌ସେଭିକ୍‌ମାନଙ୍କ ଭିତରେ ଯେଉଁ ମୂଳନୀତିର ମତଭେଦ ଥିଲା ତାକୁ ଲୁଚେଇକରି ଏକତା ଚାହୁଁ ନ ଥିଲେ । ପ୍ରଥମ ଡୁମା ଛନ୍ଦଅରେ ଯେ କୃଷୀମାନଙ୍କୁ ଜମି ମିଳିବ ଏହା ମେନ୍‌ସେଭିକ୍‌ମାନେ ପ୍ରଚାର କରି କୃଷୀମାନଙ୍କୁ ଭୁଲେଇ ଦେଉଥିଲେ । ବଲ୍‌ସେଭିକ୍‌ମାନେ ତାର ଘୋର ବିରୋଧ କଲେ ।

ଏହି ମତଭେଦ ସତ୍ତ୍ୱେ ବଲ୍‌ସେଭିକ୍ ନେତୃତ୍ୱରେ ରୁଷ୍ ସମାଜବାଦୀ ଗଣତାନ୍ତ୍ରିକ ମଜଦୁର ଦଳର ଚତୁର୍ଥ ଅଧିବେଶନ ରୁଷ୍ ବାହାରେ ଡେନ୍‌ମାର୍କର ରାଜଧାନୀ ଷ୍ଟକ୍‌ହୋଲମ୍‌ରେ ବସିଲା ।

ମାତ୍ର ଜାର୍‌ଶାହୀ ମୁକ୍ତ ଦେଶବ୍ୟାପୀ ବଲ୍‌ସେଭିକ୍‌ମାନଙ୍କ ଉପରେ ଏପରି ଅତ୍ୟାଚାର କରିଥାଏ ଯେ ବଲ୍‌ସେଭିକ୍‌ମାନେ ଏହି ଅଧିବେଶନକୁ ସେମାନଙ୍କର ଯଥେଷ୍ଟ ପ୍ରତିନିଧି ପଠାଇ ପାରିଲେ ନାହିଁ । ମେନ୍‌ସେଭିକ୍‌ମାନେ ଅତି ସୁବିଧାବାଦୀ ବୁଦ୍ଧିଜୀବୀମାନଙ୍କୁ ନିଜ ପକ୍ଷରୁ ନେଇ ପ୍ରତିନିଧି ସ୍ୱରୂପ ପଠାଇଲେ । ଫଳରେ ଅଧିବେଶନରେ ମେନ୍‌ସେଭିକ୍‌ମାନେ ସଂଖ୍ୟା ଗରିଷ୍ଠ ହେଲେ ଏବଂ ଅଧିକାଂଶ ନୀତି ମଧ୍ୟ ମେନ୍‌ସେଭିକ୍‌ମାନଙ୍କ ଇଚ୍ଛା ଅନୁସାରେ ହୋଇପାରିଲା ।

ଜମିଦାରୀ ପ୍ରଥା ଉଚ୍ଛେଦ କରି ଜମିକୁ ଜାତୀୟ ସମ୍ପତ୍ତି କରାଯିବ ବୋଲି ଲେନିନଙ୍କର ପ୍ରସ୍ତାବକୁ ମେନ୍‌ସେଭିକ୍‌ମାନେ ବିରୋଧ କଲେ ।

Digitized by srujan ka@gmail.com

ଦଳର ଖବରକାଗଜରେ ଓ ଦଳର ନେତୃ କମିଟିରେ ମେନ୍‌ସେଭିକ୍‌ମାନେ ଅଧିକ ସଂଖ୍ୟା ଥାଇ ଆନନ୍ଦରେ ଉତ୍‌ଫୁଲ୍ଲ ହେଲେ ଏବଂ ବଲ୍‌ସେଭିକ-ମାନଙ୍କୁ ନିକାଶ କରି ଦେଇ ପାରିବେ ବୋଲି ସ୍ୱପ୍ନ ଦେଖିଲେ ।

ବଲ୍‌ସେଭିକ୍‌ମାନେ ନିଜର ଅକ୍ଷମତା କାଳରେ ଯେତେବେଳେ ଡ୍ୟୁମା ବା ପାର୍ଲିଆମେଣ୍ଟକୁ ବୟକଟ୍ କରିଥିବ ଓ ଯେତେବେଳେ ଗ୍ରହଣ କରିଥିବ ତା ବେଶ୍ ବୁଝିଥିଲେ । ତେଣୁ ବୁଲିଗିନ୍ ଡ୍ୟୁମା ଓ ପ୍ରଥମ ଡ୍ୟୁମାକୁ ବୟକଟ୍ କରି ସେମାନେ ବିପ୍ଳବକୁ ଅଧିକ ଶକ୍ତିଶାଳୀ କରେଇଥିଲେ ଏବଂ ଗୃହୀ ଓ ମଜଦୁରର ସମସ୍ତ ଦୃଷ୍ଟି କେବଳ ବୈପ୍ଳବିକ ଆନ୍ଦୋଳନରେ ହିଁ କେନ୍ଦ୍ରୀଭୂତ କରିଥିଲେ ।

ବିପ୍ଳବର ପରାଜୟ ଦେଖି ଜାର୍ ପ୍ରଥମ ଡ୍ୟୁମାକୁ ଜବରଦସ୍ତ ଭାଙ୍ଗିଦେଇ ଅଳ୍ପ କ୍ଷମତା ଥିବା ଦ୍ୱିତୀୟ ଡ୍ୟୁମା ମଞ୍ଜୁର କଲେ ।

ବଲ୍‌ସେଭିକ୍‌ମାନେ ପରିବର୍ତ୍ତିତ ଅବସ୍ଥାରେ ଡ୍ୟୁମାରେ ଯୋଗଦେବା ନୀତିକୁ ପସନ୍ଦ କଲେ । ପରାଜୟପରେ ବେଆଇନ କାମ ସଙ୍ଗେ ଆଇନସଙ୍ଗତ କାମକୁ ମିଶେଇ ପୁଣି ଥରେ ବିପ୍ଳବ ସଂଗଠନ କରିବାବିଷୟରେ ତାହା ବଲ୍‌ସେଭିକ୍‌ମାନଙ୍କୁ ଜଣାଥିଲା । ବଲ୍‌ସେଭିକ୍‌ମାନେ ସ୍ପଷ୍ଟ ଘୋଷଣା କରିଥିଲେ କି ଡ୍ୟୁମାରେ ଆଇନ ବିଧାନ କରିବାକୁ ନୁହେଁ, ମାତ୍ର ବାହାରେ ଜନତାର ଆନ୍ଦୋଳନକୁ ଡ୍ୟୁମା ଭିତରେ କିପରି ସାହାଯ୍ୟ କରିପାରିବ ତାର ବ୍ୟବସ୍ଥା କରିବାକୁ ବଲ୍‌ସେଭିକ୍‌ମାନେ ଡ୍ୟୁମାକୁ ଯିବାର ସ୍ଥିର କଲେ ।

ମେନ୍‌ସେଭିକ୍‌ମାନେ କହିଲେ ଯେ ଡ୍ୟୁମା ଏକ ପ୍ରକୃତ କ୍ଷମତାପନ୍ନ ସଂସ୍ଥା ଏବଂ ସେଥିରେ ସିବାଲ୍‌କଟି ଅତି ପ୍ରତିକ୍ରିୟାଶୀଳ କାନ୍ସ୍ଟି-ଗଣତାନ୍ତ୍ରିକମାନଙ୍କ ସଙ୍ଗରେ ମଧ୍ୟ ଏକତା ପ୍ରତିଷ୍ଠା କରାଯାଉ । ଦଳର ନେତୃତ୍ୱ ମେନ୍‌ସେଭିକ୍‌ମାନଙ୍କ ହାତରେ ଥିବାରୁ ସେମାନେ ବହୁତ ସମୟରେ ଅତି ସୁବିଧାବାଦୀ ନୀତି ଗ୍ରହଣ କଲେ ।

Digitized by srujan ka@gmail.com

ଏହି ପ୍ରତିକ୍ରିୟା ସମୟକୁ "ଷ୍ଟୋଲିପିନ୍ ପ୍ରତିକ୍ରିୟା" କୁହାଯାଏ । ତାଙ୍କ ପ୍ରଧାନମନ୍ତ୍ରୀ ଷ୍ଟୋଲିପିନ୍ ଏହି ଅତ୍ୟାଚାରର ତାଣ୍ଡବଲୀଳା ଚଳାଉଥିଲାବେଳେ ମେନ୍‌ସେଭିକ୍‌ମାନେ ବିଳମ୍ବ ସ୍ୱରରେ ସୁବିଧାବାଦୀ ପନ୍ଥା ଅନୁସରଣ କଲେ । ଦଳ ନିଷେଧପି କାମ ନ କରୁ ବୋଲି ସେମାନଙ୍କର ମତ ହେଲା । ବଲ୍‌ସେଭିକ୍‌ମାନେ ଏହାର ତୀବ୍ର ବିରୋଧ କଲେ । ଦଳ ଭିତରେ 'ଓଟଜୋଭିଷ୍ଟ୍' ବୋଲି ଆଉ ଏକଥାଏ ମନ୍ତ୍ୟଜୋଟିକ ଖୋଲି ଗରମ ଗରମ କଥା କହି  କାମ ନ କରି ସନ୍ତୁଷ୍ଟ ରହୁଥିଲେ । ସେମାନେ ସବୁବେଳେ ବଡ଼ ବଡ଼ ଧାବାର ଉଠାଉଥିଲେ; କିନ୍ତୁ କୌଣସି କଥା ବୁଝିବାକୁ ଚେଷ୍ଟା କଲେ ନାହିଁ । ଲେନିନ୍ ସେମାନଙ୍କ ନାମ ଦେଇଥିଲେ, "ପାଗଳା ନିମ୍ନମଧ୍ୟବିତ୍ତ ଶ୍ରେଣୀ" ।

ଏମାନଙ୍କ ସାଙ୍ଗରେ ଟ୍ରଟସ୍କି ମଧ୍ୟ ବଲ୍‌ସେଭିକ୍‌ମାନଙ୍କର ବିରୋଧ କରିବାରେ ଲାଗିଲେ ।

ତେଣୁ ରୁଷ୍ ଆନ୍ଦୋଳନକୁ ଷ୍ଟୋଲିପିନ୍‌ଙ୍କ ଅତ୍ୟାଚାରରୁ ବଞ୍ଚେଇ ରଖି ମେନ୍‌ସେଭିକ୍, ଟ୍ରଟସ୍କି ଓ ଓଟଜୋଭିଷ୍ଟ୍‌ମାନଙ୍କ ସୁବିଧାବାଦୀ କବଳରୁ ଦଳ ଓ ଶ୍ରମିକଶ୍ରେଣୀକୁ ରକ୍ଷା କରିବାକୁ ବଲ୍‌ସେଭିକ୍‌ମାନେ ଦଳର ଅଉ ଏକ ଅଧିବେଶନ ଡାକିଲେ ।

ଏହି ଅଧିବେଶନରେ ବଲ୍‌ସେଭିକ୍‌ମାନେ ସଂଖ୍ୟାଧିକ ହେଲେ ଏବଂ ମେନ୍‌ସେଭିକ୍‌ମାନଙ୍କର କୌଣସି ମତ ଗୃହୀତ ହୋଇ ପାରିଲା ନାହିଁ । ଅଧିବେଶନ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି କଲେ ଯେ ଡୁମା ଭିତରେ ଥିବା ସାମ୍ରାଜୀ-ଗଣତାନ୍ତ୍ରିକ, କ୍ୟାଡେଟ୍ ଓ ସୋସାଲିଷ୍ଟ୍ ରିଭଲ୍ୟୁସନାରୀମାନଙ୍କର ବିରୋଧ କରାଯିବ ।

ସ୍ୱାଭେ ଷ୍ଟୋଲିପିନ୍‌ଙ୍କ ଅତ୍ୟାଚାର ବଢ଼ି ଚାଲିଲା । ବ୍ଲାକ୍ ହଣ୍ଡ୍ରେଡ୍ସ୍‌ବା କଳାଶତକ ବୋଲି ଏକ ଦଳ ଷ୍ଟୋଲିପିନ୍ ଈଶାରର କରି ଆନ୍ଦୋଳନକାରୀ ବିଶେଷତଃ ବଲ୍‌ସେଭିକ୍‌ମାନଙ୍କ ଉପରେ ଦମନ ଚଳାଇଲେ । ହଜାର ହଜାର ଚାଷୀ ମଜଦୁରଙ୍କୁ ଗୁଳିରେ ମାରି ଦିଆଗଲା । ହଜାର ହଜାର

Digitized by srujan ka@gmail.com

ସଂଖ୍ୟାରେ ଜେଲଖାନା କିମ୍ବା ବରଫବୃତ ସାଇବେରିଆକୁ ନିର୍ବାସନ ଦଣ୍ଡ ଦେଇ ପଠାଉଥିଲେ।

ଲେନିନ୍‌ଙ୍କ ମୁଣ୍ଡ ଆଣିବାପାଇଁ ଜାରର ପୁଲିସ୍ ଖୋଜି ବୁଲିଲେ। ଲେନିନ୍ ଏହି ଅବସ୍ଥାରେ ପୁଣି ଲୁଚିକରି ଋଷରୁ ଚାଲିଗଲେ ଏବଂ ବିଦେଶରେ ରହି ବିପ୍ଳବର ପରିଚାଳନା କଲେ।

ରକ୍ତ ରବିବାର ଦିନ ଜାର୍ ଯେଉଁ ଉପହାସ ଓ ତାଚ୍ଛିଲ୍ୟର ହସ ହସିଥିଲେ ଆଜି ତାଙ୍କର ତାହାହିଁ ମନେ ପଡ଼ୁଛି। ଏଥର ସେ ଆଶ୍ୱସ୍ତିର ନିଶ୍ୱାସ ମାରିଲେ। ସେ ମନେ କଲେ, ମନ୍ତ୍ରୀ ଷ୍ଟୋଲିପିନ୍ ଚିରଦିନ ଲାଗି ଋଷବିପ୍ଳବୀଙ୍କୁ ନିଷ୍ପେଷିତ କରିଦେଲେ। ଚିରଦିନ ଲାଗି ଋଷ ବିପ୍ଳବ ସମାଧି ଲଭିଲା। ଏଣିକି ନିଶ୍ଚିନ୍ତ ହୋଇ ରାଜା ଆଉ ରାଣୀ ରାଜ୍ୟଭୋଗ କରିବେ। ତାଙ୍କ ଭବିଷ୍ୟତ ବଂଶଧର ଦେଖିବେ, ରାଜା ନିକୋଲାସ୍ କେବଳ ଦୁର୍ଦ୍ଦାନ୍ତ ନୁହଁନ୍ତି, ତାଙ୍କ ପରମ ସାଥୀ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦକୁ ମଧ୍ୟ ଦୁନିଆରେ ଚିରଞ୍ଜୀବୀ କରି ଯାଇଛନ୍ତି।

ଫକ୍ତ ୧୯୦୫ ରୁ ୧୯୦୭ ଏହି ଦୁଇ ବର୍ଷ ଭିତରେ ଋଷର ପ୍ରତ୍ୟେକ ବୁର୍ଜୁଆ ଶ୍ରେଣୀର ନୂଆ ଇତିହାସ ଲେଖା ହୋଇଥିଲା। ସେହି ଲେଖା ଲେଖିବାକୁ ନୁହେଁ; ସେ ଲେଖା ଲେନିନ୍ ନିଜର ହୃଦୟରେ ଅଙ୍କା। ସେ ଲେଖା ଜାର ପଢ଼ିପାରିଲେ ନାହିଁ, ଷ୍ଟୋଲିପିନ୍ ପଢ଼ିପାରିଲେ ନାହିଁ; ଏମିତିକି ମେନ୍‌ଶେଭିକ୍, ସୋସିଆଲିଷ୍ଟ ରେଭଲ୍ୟୁସନାରି, ଟ୍ରଟ୍‌ସ୍କି ବା ପ୍ଲେଖାନଭ୍ ମଧ୍ୟ ପଢ଼ିପାରିଲେ ନାହିଁ।

Digitized by srujan ka@gmail.com

।

## ଦୀର୍ଘ ପାଞ୍ଚ ବର୍ଷ ପରେ

ସମୟର ଉପହାସ, ତାର ଇଙ୍ଗିତ ଜାର୍ ନିକୋଲାସ୍, ମନ୍ତ୍ରୀ ଷ୍ଟୋଲିପିନ୍ ବୁଝି ପାରିଲେ ନାହିଁ । ଇତିହାସର ଧାରାକୁ, ସମାଜ ବିକାଶର ଧାରାକୁ ଯଦି ରାଜା ବୁଝନ୍ତେ, ରାଜନ୍ୟବର୍ଗ ବୁଝନ୍ତେ, କୋଟିପତି ବୁଝନ୍ତେ, ମିଲ୍ ମାଲିକ ବା ଜମିଦାର ବୁଝନ୍ତେ, ତେବେ କେବେହେଁ ସେମାନେ କାଳର ମୃତ୍ୟୁଦୂତଙ୍କୁ ଆତ୍ମସମର୍ପଣ କରନ୍ତେ । କିନ୍ତୁ ସେମାନେ ବହୁ ପଢ଼ନ୍ତି; ବହୁ ଲେଖନ୍ତି; ଶାସ୍ତ୍ର, ଦର୍ଶନ ପଢ଼ନ୍ତି, ପଢ଼ାନ୍ତି; ଅଥଚ ତା'ର ମର୍ମ ବୁଝନ୍ତି ନାହିଁ କି କେବେ ଜୀବନରେ ବୁଝି ନିଜ ବାଟ ସୁଧାରନ୍ତି ନାହିଁ । ତେଣୁ ସେମାନେ ସମୟର ଉପହାସକୁ ବୁଝିପାରନ୍ତି ନାହିଁ । ଶେଷରେ ଧ୍ୱଂସପ୍ରାପ୍ତ ହୋଇ ମରନ୍ତି । ତାହାହିଁ ସେମାନଙ୍କ ପ୍ରତି ଇତିହାସର ନିର୍ଦ୍ଦେଶ, ବିକାଶ ଓ ପରିବର୍ତ୍ତନର ହଙ୍ଗାମା ଭିତରେ ସେମାନେ କ୍ଷୋଭ ପାଆନ୍ତି; ତଥାପି ନିଜର ଅଣ୍ଟା ଛାଡ଼ନ୍ତି ନାହିଁ – ତଥାପି ନିଜର ଶୋଷଣର ବାଟକୁ ଛାଡ଼ିଲେ କାହିଁ ନାହିଁ । ଅତ୍ୟାଚାର ବଢ଼ି ଚାଲେ, ଶୋଷଣ ବଢ଼ି ଚାଲେ—ଏହା ବାସ୍ତବ ସତ୍ୟ—ଐତିହାସିକ ସତ୍ୟ । ଶତ ସାଧୁ, ସନ୍ଥ ମହାପୁରୁଷ, ମହାତ୍ମା ଆସି ସେମାନଙ୍କୁ ସଦ୍‌ବୁଦ୍ଧି ଦେଲେ ମଧ୍ୟ, ନିଜ ବାଟ ବଦଳେଇ ଲୋକଙ୍କ ମୁକ୍ତିକୁ ଆଣିଦେବାକୁ କହିଲେ ମଧ୍ୟ ସେମାନେ ଶୁଣନ୍ତି ନାହିଁ । ସାଧୁ, ସନ୍ଥ, ମହାପୁରୁଷଙ୍କ ଇଚ୍ଛା ବା ଆକାଂକ୍ଷା । ଖୁବ୍ ମହତ୍ ହୋଇପାରେ; ମାତ୍ର କାର୍ଯ୍ୟରେ ସେମାନଙ୍କ ନୀତି ଏକ ଶୋଷକଶ୍ରେଣୀକୁ ହିଁ ସାହାଯ୍ୟ କରେ । ଇତିହାସ ସାଧୁସନ୍ଥଙ୍କ ଏହି ନୀତି ଭୁଲ୍ ବୋଲି ପ୍ରମାଣ କରେ । ଭୁଲ ନୀତି ପ୍ରତି ମଧ୍ୟ ଇତିହାସର ଏକ ଉପହାସ ।

Digitized by srujan ka@gmail.com

ତେବେ ଅତ୍ୟାଚାରର ଏ ଜଞ୍ଜାଳରୁ ମୁକ୍ତିବାର ଉପାୟ ? ତାହା ମଧ୍ୟ ଇତିହାସ ସ୍ପଷ୍ଟ କହିଦେଉଛି ।

ଶୋଷିତ ଶ୍ରେଣୀର ସଂଗଠିତ ବିପ୍ଳବ—ସେ ବିପ୍ଳବ ଅଧା ପନ୍ତରିଆ ବା ଧୀରେ ଧୀରେ ନୁହେଁ—ସେ ବିପ୍ଳବ ଶାନ୍ତି ସଙ୍ଗେ ଖାଲିସ କଥାର ନୁହେଁ । ତାହା ନେଇଛି ବୈପ୍ଳବିକ ଧାରାରେ ହିଁ ରୁଷବିପ୍ଳବ ଚାଲିଲା । ପର୍ଦ୍ଦ ସାତ ବର୍ଷ ପରେ ଏହା ଜାଗ୍ରତ ହୋଇ ଉଠିଲା । ସେତେ ବେଳେ ରୁଷ ଜନତାର ପ୍ରକୃତି ନିଜ ହାତକୁ ।

୧୯୧୦ରେ ବିଶ୍ୱବିଖ୍ୟାତ ଲେଖକ କାଉଣ୍ଟ ଟଲଷ୍ଟୟଙ୍କର ମୃତ୍ୟୁ ହେଲା । ତାଙ୍କର ମୃତ୍ୟୁ ପ୍ରତି ସମ୍ମାନ ଦେଖାଇବାକୁ ତାଙ୍କ ସବୁ ଭକ୍ତଗଣ ସେଣ୍ଟ ପିଟରବର୍ଗର ମଜଦୁର ଓ ଛାତ୍ର ରାସ୍ତାଘାଟରେ ପଟୁଆର ବାହାର କଲେ । ଏହା ପୂର୍ବରୁ ଜାଗରଣ ଚିହ୍ନ; ମାତ୍ର ଏହା ଏକ ଆଗାମୀ ଜାଗରଣର ସୂଚନା ଦେଉଥିଲା । ସେତେବେଳେ ବଡ଼ ବାଧାବିଘ୍ନ ଥାଉ ନା କାହିଁକି, ଷ୍ଟୋଲିପିନ୍ ଯେତେ ଅତ୍ୟାଚାର କରନ୍ତୁ ନା କାହିଁକି, ସହସ୍ର ସହସ୍ର ଲୋକ ଗୁଳିରେ ପ୍ରାଣ ହରାନ୍ତୁ ନା କାହିଁକି ରୁଷ୍ ମଜଦୁର ଶ୍ରେଣୀ ଯେ ଚିରଦିନ ଦବି ଦବି ଯିବ ନାହିଁ ଏହାହିଁ ଏଥିରୁ ପ୍ରମାଣ ମିଳିଲା ।

ଏହି ସୂଚନା ଅଚିରାତ୍ ସତ୍ୟରେ ପରିଣତ ହେଲା । ସାଇବେରିଆରେ ଲେନା ସୁନାଖଣି—ତାର ମାଲିକ ଥିଲେ ବ୍ରିଟିଶ ଓ ରୁଷ ପୁଞ୍ଜିପତି । ବାର୍ଷିକ ସତୁରି ଲକ୍ଷ ରୌପ୍ୟମୁଦ୍ରା ସେଥିରୁ ଲାଭ ହୁଏ; କିନ୍ତୁ ମଜଦୁରମାନେ ସାଇବେରିଆ ଜଙ୍ଗଲର ପଶୁଙ୍କଠାରୁ ହୀନ ଅବସ୍ଥାରେ ଥାଆନ୍ତି ।

୧୯୧୨ ମସିହା ଏପ୍ରିଲ ୪ ତାରିଖ ଦିନ ଯେତେବେଳେ ସୁନାଖଣି ମଜଦୁରମାନେ ଧର୍ମଘଟ ସମ୍ପର୍କରେ ମାଲିକଙ୍କ ସଙ୍ଗରେ ମିଳାମିଶା କରିବାକୁ ଯାଉଥିଲେ, ଜାରର ଯମଦୂତମାନେ ଗୁଳିମାଡ଼ରେ ୫୦୦ ଶ୍ରମିକଙ୍କୁ ହତ ଓ ଆହତ କଲେ ।

Digitized by srujan ka@gmail.com

ଶହେ ରୁଟି, ହଜାର ରୁଟି, ତିନି ଲକ୍ଷ ଋଷ ଶ୍ରମିକ ଏବଂ ଗୁଣ୍ଡାମାନଙ୍କ ପ୍ରତିବାଦ କଲେ । ବିପ୍ଳବର ହଳାହଳ ତଥ୍ୟ ସେମାନଙ୍କ ମାନସରେ ନିତ୍ୟ ଭରିଦେଲା । କ୍ରୋନଷ୍ଟାଡ୍ ବନ୍ଦରର ମଧ୍ୟ କଠୋରତା ଏକାଧିକବାର ଆଣି ମୋଟିବା ପରେ ଉଦ୍ବେଳିତ ହେଲା । ଲେନିନ ବନ୍ଧ୍ୟାପାଣ୍ଡ ଋଷ ଜନତାକୁ ଦୃଷ୍ଟିରେ ଭଲ ନାହିଁ—ଋଷ ଜନତାକୁ ଅନ୍ନର କଷ୍ଟରୀ ହେଉ ଗଢ଼ିଲା । ଦେଶର ଗୋଟିଏ ସୀମାରୁ ଅପର ସୀମା ପର୍ଯ୍ୟନ୍ତ ସହର, ବଜାର, ଗ୍ରାମ ଗୃହମାନଙ୍କରେ ଏକ ବୈପ୍ଳବିକ ହଲ୍ଲା ପଡ଼ି ପ୍ରଳୟ ସୃଷ୍ଟି କରିଗଲା ।

ଋଷରେ ଏପରି ଏକ ସମୟ ଯେ ଶୀଘ୍ର ଦେଖାଦେବ ଏକଥା ଲେନିନ ବଲ୍‌ସେଭିକ୍‌ମାନେହିଁ ଆଗରୁ ଜାଣି ପାରୁଥିଲେ । ତେଣୁ ସେ ଅନାଗତ ବିପ୍ଳବ ଲାଗି ଋଷ୍ ମଜଦୁର ଶ୍ରେଣୀର 'ଅଗ୍ର ଗମ୍ୟ ସୈନ୍ୟବାହିନୀ' ହିସାବରେ ସେମାନେ ନିଜକୁ ତିଆରି କରି ନେଉଥିଲେ ।

ଏଥିଲାଗି ମେନ୍‌ସେଭିକ୍, ଔଟୋଭିଷ୍ଟ, ଟ୍ରଟ୍‌ସ୍କିପନ୍ଥୀ, ଲିକୁଇ-ଡେଟରଙ୍କ ସଙ୍ଗେ ସେମାନେ ନିର୍ମୂଳ ସଂଗ୍ରାମ କରିଥିଲେ ।

ଟ୍ରଟ୍‌ସ୍କି ଅତି ସୁବିଧାବାଦୀ ପନ୍ଥା ଧରି ମଜଦୁର ଆନ୍ଦୋଳନକୁ ଖଣ୍ଡ ଖଣ୍ଡ କରିବାକୁ ଉଦ୍ୟମ କଲେ । 'ଅଗଷ୍ଟବ୍ଲକ୍' ବୋଲି ଏକ ଦଳ ଗଢ଼ି ଲେନିନ୍ ଓ ବଲସେଭିକ୍‌ମାନଙ୍କର କୁତ୍ସା ପ୍ରଚାର କରିବାରେ ଲାଗିଲେ ! ମାତ୍ର ବଲ୍‌ସେଭିକ୍‌ମାନେ ଏହାର ଏପରି ପ୍ରତ୍ୟୁତ୍ତର ଦେଲେ ଯେ ଟ୍ରଟ୍‌ସ୍କିଙ୍କ 'ଅଗଷ୍ଟବ୍ଲକ୍' ଅଠର ମାସ ଭିତରେ ସମାପ୍ତ ହୋଇଗଲା । ପୁଣି ଥରେ ଟ୍ରଟ୍‌ସ୍କି ଋଷ୍ ମଜଦୁର ଶ୍ରେଣୀ ମଧ୍ୟରେ ହାରି ମାନିଲେ । ଲେନିନ୍ ଟ୍ରଟ୍‌ସ୍କିଙ୍କ ନୀତିର ଘୋର ବିରୋଧ କରି କହିଥିଲେ ଯେ ଟ୍ରଟ୍‌ସ୍କି ଅତି ନିର୍ଲଜ୍ଜ ଓ ନୀତିହୀନ ଭାବେ ମଜଦୁରମାନଙ୍କୁ ଠକୁଛନ୍ତି । ବଲସେଭିକ୍‌ମାନେ ଏହି ସୁବିଧାବାଦୀ-ମାନଙ୍କ ବିରୁଦ୍ଧରେ ଅବିଶ୍ରାନ୍ତ ଲଢ଼େଇ ଚଳାଇଲେ । ଉଦ୍ଦେଶ୍ୟ ଥିଲା, ଆଗାମୀ ଯେଉଁ ବିପ୍ଳବ ଆସୁଛି ସେଥିଲାଗି ମଜଦୁର ଶ୍ରେଣୀକୁ ସଂଗଠିତ କରିବା । ଏହି ଉଦ୍ଦେଶ୍ୟ ସଫଳ କରିବା ଲାଗି ମାସ୍କୋନଗରୀ,

Digitized by srujan ka@gmail.com

ଶୃଙ୍ଖଳିତା ଏବଂ ଶ୍ରମୀମଜଦୁର ଶ୍ରେଣୀର ଏକମାତ୍ର ସଚ୍ଚା ସାଥୀରୂପେ ବଲ୍‌ସେଭିକ୍‌ମାନେ ପ୍ରାଣପାତ ଉଦ୍ୟମ କରିଥିଲେ ।

ଏହି ସୁବିଧାବାଦୀମାନଙ୍କ ଗାଢ଼ ପଦାରେ/ପଡ଼ିଗଲାରେ ୧୯୧୨ ଜାନୁଆରୀ ମାସରେ ବଲ୍‌ସେଭିକ୍‌ମାନେ ପ୍ରେଗ୍‌ଠାରେ ଋଷ ସମାଜତନ୍ତ୍ରୀ ଶ୍ରମିକ ଦଳର ଏକ ବୈଠକ ଡାକିଲେ ।

ପ୍ରେଗ୍ ସମ୍ମିଳନୀ ସର୍ବଶେଷରେ ଏହି ସୁବିଧା 'ପନ୍ଥୀମାନଙ୍କୁ ଦଳରୁ ବାହାର କରିଦେଲା । ବଲ୍‌ସେଭିକ୍‌ମାନେ କେବଳ ମେନ୍‌ସେଭିକ୍ ପ୍ରଭୃତି ଶ୍ରମ ମଜଦୁର ଦ୍ରୋହୀଙ୍କୁ ପାର୍ଟିରୁ ଅନ୍ତର କରି ସନ୍ତୁଷ୍ଟ ହେଲେ ନାହିଁ । ବିପ୍ଳବର ପରିଚାଳନା ଲାଗି ବଲ୍‌ସେଭିକ୍‌ମାନେ ଏକ ସ୍ୱତନ୍ତ୍ର ଦଳ ଗଢ଼ି ତାକୁ ନୂଆ ସାଂଗଠନିକ ରୂପ ଦେଲେ ।

ପ୍ରେଗ୍ ସମ୍ମିଳନୀର ନିଷ୍ପତ୍ତି ଏତେ ମହତ୍ତ୍ୱପୂର୍ଣ୍ଣ ଯେ ଲେନିନ ଗର୍କିଙ୍କୁ ଲେଖିଥିଲେ, "ପାର୍ଟିଧ୍ୱଂସକାରୀଙ୍କ ସତ୍ତ୍ୱେ ସର୍ବଶେଷରେ ଆମେ ପାର୍ଟି ଓ କେନ୍ଦ୍ରକମିଟିକୁ ରକ୍ଷା କରିବାରେ କୃତକାର୍ଯ୍ୟ ହୋଇପାରିଛୁଁ । ଆଶାକରେଁ, ତୁମେ ଏଥିରେ ଆନନ୍ଦିତ ହେବ ।"

ପ୍ରେଗ୍ ସମ୍ମିଳନୀରେ ମେନ୍‌ସେଭିକ୍‌ମାନେ ପାର୍ଟିରୁ ବହିଷ୍କୃତ ହେଲେ । ବଲ୍‌ସେଭିକ୍‌ମାନେ ନିଜର କେନ୍ଦ୍ର କମିଟି ବାଛିଲେ । ଷ୍ଟାଲିନ୍ ଓ ଓର୍ଜୋନିକିଡ୍‌ଜ୍ ସାଇବେରିଆରେ ନିର୍ବାସନ ଦଣ୍ଡ ଭୋଗ କରୁଥିଲେହେଁ ସେମାନଙ୍କୁ କେନ୍ଦ୍ର କମିଟିରେ ନିଆଗଲା ।

Digitized by srujan ka@gmail.com

# ସାମ୍ରାଜ୍ୟବାଦୀ ମହାସମରର ପୂର୍ବରୁ ଋଷର ଅବସ୍ଥା

ଷ୍ଟୋଲିପିନ୍‌ଙ୍କର ଲମ୍ବା ଓ ଲମ୍ବର ଶାସନ ଫଳରେ କେବଳ ବଲ୍‌ଶେଭିକ୍‌ମାନଙ୍କ ଛଡ଼ା ଅନ୍ୟ ସବୁ ଦଳ ଛନ୍‌ଛତ୍ର ହୋଇଯାଇଥାନ୍ତି ଏବଂ ପ୍ରତ୍ୟେକ ଦଳ ଅତି ଅଗ୍ରୋସଗ୍ରସ୍ତୀ ହୋଇ ଋଷ ମଜଦୁର ଆନ୍ଦୋଳନକୁ ପ୍ରତିକ୍ରିୟା ଭିତରକୁ ଟାଣି ନେବାକୁ ଉଦ୍ୟମ କରୁଥାନ୍ତି ।

୧୯୧୦ ପୂର୍ବରୁ ଋଷର କଳକାରଖାନା ଓ ଶିଳ୍ପବାଣିଜ୍ୟର ବିକାଶରେ ଭଟ୍ଟା ପଡ଼ିଯାଇଥିଲା । ମାତ୍ର ୧୯୧୦ ପରେ ଶିଳ୍ପ ସବୁ ଦ୍ରୁତ୍ ଗତିରେ ଗଢ଼ିଉଠିଲା ଓ ଶିଳ୍ପ ପ୍ରସାର ସଙ୍ଗେ ସଙ୍ଗେ ଶ୍ରମିକ ଶ୍ରେଣୀର ମଧ୍ୟ ବୃଦ୍ଧି ଓ ବିକାଶ ହେବାରେ ଲାଗିଲା । ଗୋଟିଏ ଗୋଟିଏ ଶିଳ୍ପାଞ୍ଚଳରେ ହଜାର ହଜାର ମଜଦୁର ଏକାଠି ହୋଇ ରହିବା ଫଳରେ ମଜଦୁର ଆନ୍ଦୋଳନ ଖୁବ୍ ସଂଘବଦ୍ଧ ଓ ଟାଣୁଆ ହେଲା ଏବଂ ମଜଦୁର ଶ୍ରେଣୀର ଏକ ମାତ୍ର ବୈପ୍ଳବିକ ଦଳ ବଲ୍‌ଶେଭିକ୍ ପାର୍ଟି ଦିନକୁ ଦିନ ଶକ୍ତିଶାଳୀ ହୋଇ ଉଠିଲା ।

ଏଣେ 'ଇସ୍କ୍ରା' ଋଷରେ ଏକ ନବଯୁଗର ସୂଚନା ଦେଇଥିଲା ଏବଂ ଋଷ ମଜଦୁର ଆନ୍ଦୋଳନକୁ ମେନ୍‌ଶେଭିକ୍, ସୋସାଲିଷ୍ଟ ରେଭଲ୍ୟୁସ-ନାରୀଙ୍କ ପ୍ରତିକ୍ରିୟାଶୀଳ କବଳରୁ ରକ୍ଷା କରି ୧୯୦୫ ବିପ୍ଳବ ଲାଗି ଋଷ ଋଷୀ ମଜଦୁରଙ୍କୁ ସଂଗଠିତ କରିଥିଲା ।

Digitized by srujan ka@gmail.com

ଏବେ ବଲ୍‌ଶେଭିକ୍‌ମାନଙ୍କର 'ପ୍ରଭଦା' ନାମକ ଖବରକାଗଜ ଅସ୍ଥାୟୀ ସରକାର ପ୍ରତି ମଜଦୁରଶ୍ରେଣୀକୁ ସଚେତ କରିବାରେ ପ୍ରଭୂତ ସାହାଯ୍ୟ କଲା ।

ଅଗ୍ରଣୀ ପିଟ୍ରୁଗ୍ରାଡର ମଜଦୁର ଶ୍ରେଣୀ 'ପ୍ରଭଦା'କୁ ଆଦର କଲେ । ଷ୍ଟାଲିନ୍ ଓ ମୋଲୋଟୋଭ୍ ପ୍ରଭଦା କାଗଜର ସମ୍ପାଦକମଣ୍ଡଳୀରେ ରହିଲେ । ପ୍ରଭଦା ଲାଗି ସାତହଜାର ଛଅଶହ ଶ୍ରମିକ ଦଳ ଚାନ୍ଦା ସାହାଯ୍ୟ କରିଥିଲେ । ମାତ୍ର ମେନ୍‌ସେଭିକ୍‌ମାନଙ୍କ ଖବରକାଗଜ ଲାଗି ମୋଟେ ଚାରିଶହ ଶ୍ରମିକ ଦଳ ଚାନ୍ଦା ସାହାଯ୍ୟ କରିଥିଲେ । ମେନ୍‌ସେଭିକଙ୍କ ଖବର କାଗଜକୁ ଧନିକ ବୁର୍ଜୁଆ ଶ୍ରେଣୀର ଲୋକେ ଅଧିକ ଚାନ୍ଦା ଦେଉଥିଲେ ।

ଅଲ୍ପଦିନ ଭିତରେ ପ୍ରଭଦାର କାଟ୍‌ତି ୪୦ ହଜାର ହୋଇଗଲା । ମାତ୍ର ମେନ୍‌ସେଭିକ୍ ଖବରକାଗଜର କାଟ୍‌ତି ଥିଲା ୧୬ ହଜାର ।

ଏହାହିଁ ସଙ୍କେତ ଦେଲା ଯେ ମଜଦୁରମାନେ ପୁଣି ଜାଗ୍ରତ ହୋଇ ଏକ ନୂଆ ବୈପ୍ଳବିକ ଆନ୍ଦୋଳନ ଲାଗି ପ୍ରସ୍ତୁତ ହେଉଛନ୍ତି ।

ଶ୍ରମିକ ଆନ୍ଦୋଳନ ବଢ଼ିବା ସଙ୍ଗେ ସଙ୍ଗେ ପୁଞ୍ଜିପତିମାନେ ମଧ୍ୟ ମଜଦୁର ଶ୍ରେଣୀ ଉପରେ ଭୀଷଣ ଆକ୍ରମଣ ଚଳାଇଲେ । ୧୯୧୩ ଖ୍ରୀଷ୍ଟାବ୍ଦରେ ମସ୍କୋପ୍ରଦେଶର ଶିଳ୍ପପତିମାନେ ୫୦ ହଜାର ଲୁଗାକଳ ଶ୍ରମିକଙ୍କୁ ବରଖାସ୍ତ କରି କାମରୁ ଇସ୍ତଫା କରି ଛଡ଼ାଇଦେଲେ । ପରବର୍ଷ ସେଣ୍ଟ୍ ପିଟର୍ସ୍‌ବର୍ଗରେ ୭୦ହଜାର ମଜଦୁରଙ୍କୁ କାମରୁ ବାହାର କରି ଦିଆଗଲା ।

ଅନ୍ୟ ମଜଦୁର ଶ୍ରେଣୀ ମାନଙ୍କ ଏହି ଆକ୍ରମଣକୁ ନୀରବରେ ସହିଗଲେ ନାହିଁ । ସେମାନେ ସହାନୁଭୂତି ଦେଖାଇ ଧର୍ମଘଟ କଲେ ଏବଂ ବରଖାସ୍ତ ହୋଇଥିବା ଶ୍ରମିକ ମଜଦୁର ଭାଇଙ୍କ ସାହାଯ୍ୟ ଲାଗି ନିଜ ପେଟ କାଟି ପିଲା ଝିଅଙ୍କ ପେଟ କାଟି ମଜଦୁରମାନେ ଚାନ୍ଦା ଦେଲେ ।

Digitized by srujan ka@gmail.com

ସ୍ଥିତି ୧୯୦୫ ର ପୂର୍ବାବସ୍ଥା ପାଖରେ ଫେରି ଆସିଲା । ୧୯୧୨ରୁ ୧୯୧୪ ଏଇ ପୂର୍ବବର୍ଷ ସବୁରେ ରୁଷର ମଜଦୁର, କୃଷୀ, ସୈନ୍ୟବାହିନୀ ଭିତରେ ବିପ୍ଳବର ନୂଆ ଜୁଆରର ଉଦ୍ଭବ ହେଲା ।

ପିଟର୍ସବର୍ଗର ମଜଦୁର ଆନ୍ଦୋଳନର ବାର୍ତ୍ତା ଶୀଘ୍ର ଶିଳ୍ପଜାତ ପ୍ରଦେଶଗୁଡ଼ିକରେ ବ୍ୟାପିଗଲା । ମସ୍କୋ, ପୋଲାଣ୍ଡ ଓ କକେସସ୍‌ର ପାର୍ବତ୍ୟ ଅଞ୍ଚଳର ଶ୍ରମିକଙ୍କ ସଙ୍ଗେ ଭଲ୍‌ଗାକୂଳର ବୀର ମଜଦୁର ଯୋଗ ଦେଲେ । ଜାରଶାହୀ ପୁଲିସ ଯାବତୀୟ ଦମନ ଚଳାଇଲେ ମଧ୍ୟ ଆନ୍ଦୋଳନ ହଟିଗଲା ନାହିଁ । ୧୯୧୨ରେ ପ୍ରାୟ ୧୦ ଲକ୍ଷ ଓ ୧୯୧୩ରେ ପ୍ରାୟ ୧୨ ଲକ୍ଷ ମଜଦୁର ଧର୍ମଘଟରେ ଯୋଗଦେଲେ ।

ମଜଦୁର ଆନ୍ଦୋଳନ ସଙ୍ଗେ ସଙ୍ଗେ ତୁର୍କିସ୍ଥାନରେ ସୈନ୍ୟ ବିଦ୍ରୋହ ହେଲା ଏବଂ ସେବାଷ୍ଟୋପୋଲ ଓ ବଲ୍‌ଟିକ ସାଗର ନୌବାହିନୀରେ ବିଦ୍ରୋହ ନିଆଁ ଜ୍ୱଳି ଉଠିଲା । ୧୯୧୦ରୁ ୧୯୧୪ ମଧ୍ୟରେ କୃଷୀମାନଙ୍କ ଭିତରେ ୧୩ ହଜାରରୁ ଅଧିକ ବିଦ୍ରୋହ ହୋଇଗଲା ।

ଖାଲି ସେତିକି ନୁହେଁ । ଋଷ୍ ଭିନ୍ନ ଜାତିମାନଙ୍କର ଏକ ବନ୍ଦୀଶାଳା ଥିଲା । ଜାର ଶାସନ ଜର୍ଜିଅନ୍, ଆରମେନିଅନ୍, ତାତାର୍, କିରଗିଜ୍ ପ୍ରଭୃତି ଭିନ୍ନ ଜାତିଙ୍କ ଉପରେ ଅତି ଅବର୍ଣ୍ଣନୀୟ, ଜାତିଗତ ଅତ୍ୟାଚାର ଚଳାଉଥିଲେ । ତେଣୁ ଦଳିତ ଜାତିମାନଙ୍କ ଭିତରେ ଯେଉଁ ଆନ୍ଦୋଳନ ଜାଗି ଉଠୁଥିଲା ତାହାକୁ ଦବାଇ ଦେବାକୁ ଜାରଶାହୀ ପୁଲିସ ଓ ସେଠି ଋଷ୍ ଜାତିର ଧନୀ ବୁର୍ଜୁଆ ସମ୍ପ୍ରଦାୟ ସବୁପ୍ରକାର ଉଦ୍ୟମ କରୁଥିଲେ । ପରାଧୀନ ଜାତିମାନଙ୍କର ମନ୍ଦ ଜାତି ସଙ୍ଗେ ସମାନସ୍ତର ଓ ସ୍ୱତନ୍ତ୍ର ହେବାର ବାସନାକୁ ଦାବି ଦେବାଲାଗି ରୁଷଶାସନ ନିଜର ଶକ୍ତି ମୂଷ୍ଠାବନ୍ତ ଉପାୟ ଧରିଥିଲା ।

ଅନ୍ତର ମଧ୍ୟ ଏହି ପରାଧୀନ, ଅନୁନ୍ନତ ଓ ଅତ୍ୟାଚାରିତ ଜାତିମାନଙ୍କର ଜାତୀୟ ଆନ୍ଦୋଳନ ଓ ମଜଦୁର ଆନ୍ଦୋଳନକୁ ସେହି ଜାତିର

Digitized by srujan ka@gmail.com

ଯେତେ ବୁର୍ଜୁଆ ସମ୍ପ୍ରଦାୟ ଅତି ପ୍ରତିକ୍ରିୟାଶୀଳ ନେତୃତ୍ୱ ଦେବାର ସୁଯୋଗ ପାଉଥିଲେ ଏବଂ ମଜଦୁର ଶ୍ରେଣୀର ବୈପ୍ଳବିକ ଆନ୍ଦୋଳନକୁ ନିଜ ନିଜ ଜାତିର ଦ୍ୱାହିଦେଇ ବିଭକ୍ତ କରି ଦେଉଥିଲେ ।

ଏହି ଜାତି ସମସ୍ୟା ସମ୍ପର୍କରେ ଋଷିଆ ଦଳ ବିଭିନ୍ନ ମତ ଗ୍ରହଣ କଲେ । ମେନ୍‌ଶେଭିକ୍ ଓ ବଲ୍‌ଶେଭିକଙ୍କର ମତ ଭିତରେ ଶେଷ ସଂଗ୍ରାମ ଲାଗିଲା । ମାତ୍ର ମେନ୍‌ଶେଭିକ୍‌ଙ୍କ ମତ ପୁଣି ଥରେ ଭୁଲ ବୋଲି ପ୍ରମାଣିତ ହେଲା । ମେନ୍‌ଶେଭିକ୍‌ଙ୍କ ଜାତିଗତ ପ୍ରଶ୍ନ ସମାଧାନରେ କାର୍ଯ୍ୟକ୍ରମ ଥିଲା, 'କଲ୍‌ଚରାଲ୍ ଅଟୋନୋମି' ବା 'କୃଷ୍ଟିଗତ ସ୍ୱାତନ୍ତ୍ର୍ୟ' । ବଲଶେଭିକ୍ ଏହି ଜାତିଗତ ସମସ୍ୟାକୁ ବୈଜ୍ଞାନିକ ଅନ୍ୱେଷଣା କରି ସେଥିଲାଗି ସ୍ୱତନ୍ତ୍ର ପଥ ନିର୍ଦ୍ଦେଶ କରିଥିଲେ । ୧୯୧୩ ଖ୍ରୀଷ୍ଟାବ୍ଦରେ ଷ୍ଟାଲିନ୍ 'ମାର୍କ୍ସ୍‌ବାଦ ଓ ଜାତି ସମସ୍ୟା' ନାମକ ପ୍ରବନ୍ଧରେ ଋଷରେ ବାସ କରୁଥିବା ପ୍ରତ୍ୟେକ ଜାତିର ପୂର୍ଣ୍ଣ ଆତ୍ମନିୟନ୍ତ୍ରଣ ଅଧିକାର ଘୋଷଣା କଲେ ଏବଂ ପ୍ରତ୍ୟେକ ଜାତି ଇଚ୍ଛା କଲେ ଋଷ୍‌ରାଷ୍ଟ୍ରରୁ ଅଲଗା ହୋଇଯାଇପାରିବେ ବୋଲି ମଧ୍ୟ ସ୍ଥିର କରିଲେ । ଜାତି ସମସ୍ୟା ସମାଧାନର ଏହାହିଁ ଏକମାତ୍ର ବୈପ୍ଳବିକ ପନ୍ଥା । ତାହା ଫଳରେ ପ୍ରତ୍ୟେକ ଜାତି ବହିଷ୍ଠଂତରେ ସମାନ ଓ ସ୍ୱତନ୍ତ୍ର ହୋଇ ଦାୟଦାର ଅଧିକାର ପାଇବେ ବୋଲି ଚାଷିମାନେ ଏକ ହୋଇ ସମସ୍ତଙ୍କ ଶତ୍ରୁ ଜାରଶାହି ଓ ପୁଞ୍ଜିଶାହୀ ଶାସନ ବିରୁଦ୍ଧରେ ଲଢ଼ି ଜୟଯୁକ୍ତ ହୋଇପାରିବେ ।

ବଲ୍‌ଶେଭିକ୍‌ମାନେ ଷ୍ଟାଲିନ୍‌ଙ୍କ ଏହି ପ୍ରବନ୍ଧ ଅନୁସାରେ ନିଜର ଜାତି ସମସ୍ୟା ସମ୍ପର୍କରେ ଆତ୍ମନିୟନ୍ତ୍ରଣ ଓ ସାର୍ବଭୌମିକତା ମତ ଗ୍ରହଣ କଲେ । ଏହାର ଫଳରେ ଋଷ ମଜଦୁରର ଐକ୍ୟବଦ୍ଧ ଆନ୍ଦୋଳନରେ ସବୁଠାରୁ ବଳ ଯେଉଁ ବଡ଼ ବାଧା ଥିଲା, ତାହା ଦୂର ହୋଇଗଲା । ଏଣିକି ପ୍ରତ୍ୟେକ ଜାତିର ମଜଦୁର ଅନ୍ୟ ଜାତିର ମଜଦୁର ସଙ୍ଗେ, ପ୍ରତ୍ୟେକ ଜାତିର କୃଷୀ ଅନ୍ୟ ଜାତିର କୃଷୀ ସଙ୍ଗେ ଓ ପ୍ରତ୍ୟେକ ଜାତିର ସୈନିକ ଅନ୍ୟ ଜାତିର ସୈନ୍ୟ ସଙ୍ଗେ ସବୁ ସନ୍ଦେହ ଅବିଶ୍ୱାସ ଛାଡ଼ି

Digitized by srujan ka@gmail.com

ଏକ ହୋଇ ସବୁପ୍ରକାର ଅଗ୍ରଗାମୀ ଆନ୍ଦୋଳନରେ ସ୍ଥାନ ନେଲେ । ବଲ୍‌ଶେଭିକ୍‌ମାନଙ୍କର ଜାତିଗତ ନୀତି ଠିକ୍ ଓ ବୈପ୍ଳବିକ ବୋଲି ପ୍ରମାଣିତ ହେଲା ।

ସବୁ ଜାତିର ଏକତା, ଶ୍ରମିକ ଶ୍ରେଣୀର ଏକତା ତଥା କୃଷକ ଆନ୍ଦୋଳନରେ ଏକତା ପ୍ରତିଷ୍ଠା କରି ବଲ୍‌ଶେଭିକ୍ ଦଳ ଅନ୍ୟାନ୍ୟ ଦଳମାନଙ୍କ ଆଗରେ ଛିଡ଼ାହୋଇ ବିପ୍ଳବର ଆୟୋଜନରେ ଲାଗିଗଲେ ।

ମଜଦୁରମାନେ 'ପ୍ରଭଦା'କୁ ନିଜର ପ୍ରାଣଠାରୁ ଅଧିକ ଭଲ ପାଇଲେ । ପ୍ରଭଦା ବାରମ୍ବାର ବେଆଇନ ହେବା ସତ୍ତ୍ୱେ ଜା-ପ୍ରଭଦା, ପୁଠ୍-ପ୍ରଭଦା ପ୍ରଭୃତି ବିଭିନ୍ନ ନାମରେ ପ୍ରକାଶ ପାଇ ମଜଦୁର ଆନ୍ଦୋଳନକୁ ସଂଗଠିତ କରିବାରେ ଲାଗିଲା ।

ଚତୁର୍ଥ ଡୁମା (ପାର୍ଲିଆମେଣ୍ଟ) ନିର୍ବାଚନ ବେଳକୁ ପ୍ରଭଦା ଏପରି ଏକ ଆନ୍ଦୋଳନର ସୃଷ୍ଟି କଲା ଯେ, ଛଅଟିଯାକ ଶ୍ରମିକ ନିର୍ବାଚନ କେନ୍ଦ୍ରରୁ ବଲ୍‌ଶେଭିକମାନେ ଭୋଟ୍ ପାଇଲେ । ଯେଉଁଠି ମଜଦୁର ଅସଂଗଠିତ, ଯେଉଁଠି ମଜଦୁର ଆନ୍ଦୋଳନ ହୋଇନାହିଁ ବା କମ୍ ହୋଇଛି ଏବଂ ଯେଉଁ ଶ୍ରମିକମାନେ ଅପେକ୍ଷାକୃତ ଭଲ ଚଳନ୍ତି, କେବଳ ସେହିମାନଙ୍କ ଭୋଟ ମେନ୍‌ଶେଭିକମାନେ ପାଇଲେ । ମେନ୍‌ଶେଭିକମାନେ ଅସଂଗଠିତ ଶ୍ରମିକମାନଙ୍କର ଅଜ୍ଞତା ଓ ଦୁର୍ବଳତାର ସୁଯୋଗ ନେଇ ଯେ କେତେକ ଭୋଟ ପାଇଲେ ଏହି କଥା ପ୍ରମାଣିତ ହେଲା ।

ସାମ୍ରାଜ୍ୟବାଦୀ ମହାସମର ପୂର୍ବରୁ ଚତୁର୍ଥ ଡୁମାର ନିର୍ବାଚନ ଏବଂ ଶ୍ରମିକ ଦଳ ଓ ବଲ୍‌ଶେଭିକ୍‌ମାନଙ୍କର ନିର୍ବାଚନ ମୁକ୍ତ ରୁଷ ବିପ୍ଳବର ସଂଗଠନରେ ପ୍ରଭୃତ ସାହାଯ୍ୟ କଲା ।

ଶ୍ରମିକ ଦଳ ଯୁଦ୍ଧ ପୂର୍ବରୁ ଓ ଯୁଦ୍ଧ ଭିତରେ ଡୁମାରେ ଥାଇ ଅତି ଜଘନ୍ୟ ପ୍ରବଞ୍ଚନାର ପଥ ଓ ସାଲିସ ନୀତି ନେବାବେଳେ ବଲ୍‌ଶେଭିକ ନେତାମାନେ ବାହାରର ପ୍ରତ୍ୟେକ ଚାଷୀ, ମଜଦୁର, ସୈନ୍ୟବାହିନୀର

Digitized by srujan ka@gmail.com

ଅନ୍ଦୋଳନକୁ ଚରମ ସ୍ତରରେ ଥାଇ ଜାରର ସାମ୍ରାଜ୍ୟ ନିର୍ଯ୍ୟାତନାସତ୍ତ୍ୱ ଏବଂ ତା'ର ଫଳରେ ବାହାରର ଗୁପ୍ତକାମ ସଙ୍ଗେ ଡୁମା ଭିତରର ଆଇନ-ସଙ୍ଗତ କାମକୁ କିପରି ଯୋଡ଼ି ବିପ୍ଳବ ଲାଗି ଦେଶକୁ ତିଆର କରାଯିବ ତାହାର ନମୁନା ଦେଖାଇ ଦେଲେ। ଫଳରେ ଡୁମାର ବଲସେଭିକ ସଭ୍ୟମାନେ ପ୍ରତ୍ୟେକ ଜନ ଆନ୍ଦୋଳନର ମୁଖପାତ୍ର ହେଲେ ଓ ବଲ୍-ସେଭିକ ଅନ୍ଦୋଳନର ପ୍ରସାର ହେବାରେ ଲାଗିଲେ ଏବଂ ଯେତେକ ଅନୁଷ୍ଠାନ ଭାର ସରକାର ବେଆଇନ କରି ନ ଥିଲା, ସେହି ଅନୁଷ୍ଠାନ-ମାନଙ୍କରେ ବଲସେଭିକମାନେ ସଂଖ୍ୟାଗରିଷ୍ଠ ଦଳ ହୋଇଗଲେ।

ଲେନିନ୍ ଫ୍ରାନ୍ସର ପ୍ୟାରୀ ସହରରେ ଥିଲେ। ଏହି ଅବସ୍ଥା ଦେଖି ଓ ବିପ୍ଳବ ଆସନ୍ନ ହେବା ଜାଣିପାରି ରୁଷର ଅତି ନିକଟରେ ରହିବାକୁ ଅଷ୍ଟ୍ରିଆ ଭିତରକୁ ଚାଲି ଆସିଲେ।

Digitized by srujan ka@gmail.com

## ପ୍ରଥମ ସାମ୍ରାଜ୍ୟବାଦୀ ସମର

୧୯୦୫ ର ଋଷ ଜନ ବିପ୍ଳବକୁ ଧ୍ୱଂସ କରିବାଲାଗି, ଅଟମ ଜାସ୍ତି ଥାର୍ଡ୍, ବ୍ରିଟିଶ ପୁଞ୍ଜିପତିଙ୍କ ମୁଣ୍ଡ ବଥେଇଥିଲା । ତାର କାରଣ ଅତି ସ୍ପଷ୍ଟ । ଋଷରେ ଥିବା ବ୍ରିଟିଶ ପୁଞ୍ଜି ଯେ କେବଳ ବିପଦର ସମ୍ମୁଖୀନ ହୋଇଥିଲା ତା ନୁହେଁ, ବରଂ ସାମ୍ରାଜ୍ୟବାଦ ଓ ଦୁନିଆର ଶୋଷଣପ୍ରଥା ଏକ ଧ୍ୱଂସମୁଖୀ ବିପଦର ସମ୍ମୁଖୀନ ହୋଇଥିଲା । ଦୁନିଆର ବୁର୍ଜୁଆ—ପୁଞ୍ଜିପତି ଶ୍ରେଣୀ, ଦୁନିଆର ସାମ୍ରାଜ୍ୟବାଦୀ ଋଷର ୧୯୦୫ ବିପ୍ଳବକୁ ଏହି ପ୍ରଳୟଙ୍କର ବିପଦର ସଙ୍କେତ ବୋଲି ବୁଝିପାରୁଥିଲେ । ତେଣୁ ଋଷ୍ ସରକାରକୁ ବ୍ରିଟିଶ ସାମ୍ରାଜ୍ୟବାଦ ସେତେବେଳେ ପ୍ରଚୁର ଅର୍ଥ ସାହାଯ୍ୟ କରି ଭଗ୍ନମୁଖୀ ଜାରଶାସନକୁ ରକ୍ଷା କରିଥିଲା । ତା ପରେ ଋଷ୍, ବ୍ରିଟେନ୍ ଓ ଫ୍ରାନ୍ସ୍ ତିନିହେଁଯାକ ମିଶି ଏକ ସନ୍ଧି କରିଥିଲେ । ଜର୍ମାନ ସାମ୍ରାଜ୍ୟବାଦୀଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରି ତାଙ୍କୁ ଧ୍ୱଂସ କରିବାଲାଗି ତିନି ଶକ୍ତିଙ୍କର ଏହି ମେଣ୍ଟ ।

ସବୁପ୍ରକାର ସଜବାଜ ଆୟୋଜନ କରି ସାରି ଉଭୟ ପକ୍ଷର ସାମ୍ରାଜ୍ୟବାଦୀମାନେ ଯୁଦ୍ଧ ଆରମ୍ଭ କରି ଦେଲେ । ପୃଥିବୀର କଞ୍ଚାମାଲ ଓ ବଜାର ସବୁ ଆଗରୁ ଇଂରେଜ, ଆମେରିକା, ଫ୍ରାନ୍ସ ଓ ଋଷ୍ ସାମ୍ରାଜ୍ୟବାଦୀଙ୍କ ହାତରେ ବଣ୍ଟା ସରିଥିଲା । ବର୍ତ୍ତମାନ ଜର୍ମାନୀ, ଅଷ୍ଟ୍ରିଆ ପ୍ରଭୃତି ନୂଆ

Digitized by srujan ka@gmail.com

ସାମ୍ରାଜ୍ୟବାଦୀ ଶକ୍ତି ହିସାବରେ ଦୁନିଆକୁ ଆଉ ଥରେ ବାଣ୍ଟି ନିଜ ନିଜର ହାତ ସାବ୍ୟସ୍ତ କରିବାକୁ ଚାହିଁଲେ । ଇଂଲଣ୍ଡ, ଫ୍ରାନ୍ସ ପ୍ରଭୃତି ନିଜ ସାମ୍ରାଜ୍ୟକୁ ରକ୍ଷା କରିବାପାଇଁ ଓ ସାମ୍ରାଜ୍ୟବାଦୀ ଶତ୍ରୁ ଜର୍ମାନୀକୁ ନିର୍ମୂଳ କରିବାଲାଗି ଆୟୋଜନରେ ଲାଗିଗଲେ ।

ଋଷ୍‌ର ସାମ୍ରାଜ୍ୟବାଦୀ ସରକାର ତୁର୍କ ଦେଶର କନଷ୍ଟାଣ୍ଟିନୋପଲ୍‌କୁ ଓ ଅଷ୍ଟ୍ରିଆର ଗାଲିସିଆ ପ୍ରଭୃତି ନେବାକୁ ଆଖି ପକାଇଥିଲା । ବ୍ରିଟେନ ମଧ୍ୟ ମେସୋପଟାମିଆ, ପାଲେଷ୍ଟାଇନ ପ୍ରଭୃତି ତୁର୍କ ଠାରୁ ନେବାକୁ ମତଲବ ରଖିଥିଲା ଓ ଇଜିପ୍ଟରେ ଖୁବ୍ ପ୍ରାଧାନ୍ୟ ବିସ୍ତାର କରି ରହିବ ବୋଲି ମନସ୍ଥ କରିଥିଲା । ଇଂଲଣ୍ଡ ଓ ଫ୍ରାନ୍ସର ଉପନିବେଶ ଛଡ଼ା ଋଷର ୟୁକ୍ରେନ, ବଲ୍‌ଟିକ୍ ପ୍ରଦେଶ, ପୋଲଣ୍ଡ ପ୍ରଭୃତି ନେବାକୁ ଜର୍ମାନୀ ଆଶା ପୋଷଣ କରିଥିଲା । ପରସ୍ପରବିରୋଧୀ ଉଦ୍ଦେଶ୍ୟ ରଖି ସାମ୍ରାଜ୍ୟବାଦୀମାନେ ୧୯୧୪ ମସିହାରେ ଯୁଦ୍ଧରେ ପ୍ରବେଶ କଲେ ।

ଏହି ଯୁଦ୍ଧ ସମ୍ପର୍କରେ ଲେନିନ ଦଳ ବଳିଷ୍ଠ ନୀତି ଗ୍ରହଣ କଲେ । ଦ୍ୱିତୀୟ ଆନ୍ତର୍ଜାତିକ ବୋଲି ପୃଥିବୀର ସମାଜବାଦୀମାନଙ୍କର ଯେଉଁ ଆନ୍ତର୍ଜାତିକ ଅନୁଷ୍ଠାନ ଥିଲା ତାହା ୧୯୦୭ ରେ ଷ୍ଟୁଟଗାର୍ଟଠାରେ, ୧୯୧୦ ରେ କୋପେନ୍‌ହେଗେନ୍ ଠାରେ ଓ ୧୯୧୨ ରେ ବାସେଲ୍‌ଠାରେ ଆଗାମୀ ଯୁଦ୍ଧ ସମ୍ବନ୍ଧରେ ଶ୍ରମିକଶ୍ରେଣୀର ନୀତି ଧାର୍ଯ୍ୟ କରିଥିଲେ । ଆଗାମୀ ଯୁଦ୍ଧରେ ଦୁଇପକ୍ଷ ସାମ୍ରାଜ୍ୟବାଦୀ ରହିବେ; କୌଣସି ପକ୍ଷରେ ଲୋକ ହିତକାର ରହିବେ ନାହିଁ ଓ ଉଭୟ ପକ୍ଷର ଲକ୍ଷ୍ୟ ହେବ ସାମ୍ରାଜ୍ୟବାଦୀ ଲକ୍ଷ୍ୟ— ଅର୍ଥାତ୍ ସାମ୍ରାଜ୍ୟ, କଞ୍ଚାମାଲ ଓ ବଜାର ଲାଗି ଉଭୟ ପକ୍ଷ ଲଢ଼ିବେ; ଶାନ୍ତି ପାଇଁ, ମୁକ୍ତି ପାଇଁ ବା ସାମ୍ୟବାଦ ପାଇଁ କେହି ଲଢ଼ୁନାହାନ୍ତି । ତେଣୁ ମଜଦୁର ଶ୍ରେଣୀ ଏହି ଯୁଦ୍ଧର ବିରୋଧ କରିବେ, ଏହି ଯୁଦ୍ଧକୁ ନିଜ ଦେଶର ସରକାର ବିରୁଦ୍ଧରେ ଅଭ୍ୟୁତ୍ଥାନରେ ପରିଣତ କରିବେ—ଏହାହିଁ ଥିଲା ଦ୍ୱିତୀୟ ଆନ୍ତର୍ଜାତିକର ନୀତି ।

Digitized by srujan ka@gmail.com

ମାତ୍ର ଦ୍ୱିତୀୟ ଅନ୍ତର୍ଜାତିକରେ ଥିବା ଋଷର ମେନ୍‌ସେଭିକ୍‌ଦଳ ପରି ବ୍ରିଟେନର ଶ୍ରମିକଦଳ, ସୋସିଅଲ ଡେମୋକ୍ରାଟ୍ ଦଳମାନେ ଯୁଦ୍ଧ ଆରମ୍ଭ ହେବା ମାତ୍ରେ ଅତି ସୁବିଧାବାଦୀ ନୀତି ଗ୍ରହଣ କଲେ । ୧୯୧୪ ମସିହା ଯୁଦ୍ଧ ଜନଯୁଦ୍ଧ ନୁହେଁ—ସାମ୍ରାଜ୍ୟବାଦୀ ଯୁଦ୍ଧ; ତେଣୁ ଏଥିରେ ଶ୍ରମିକଶ୍ରେଣୀ ଭାଗ ନେଇ ପାରିବ ନାହିଁ ଏହି ନୀତି କେବଳ ଋଷର ବଲ୍‌ସେଭିକ୍‌ଦଳ ଓ ଲେନିନ୍ ଏବଂ ପୃଥିବୀର ଅଳ୍ପ କେତେକ ଅନ୍ତର୍ଜାତିକବାଦ ଗ୍ରହଣକରି ସୁବିଧାପନ୍ଥୀମାନଙ୍କର ତୀବ୍ର ବିରୋଧ କରୁଥିଲେ ।

୧୯୧୫ ରେ ଅନ୍ତର୍ଜାତିକବାଦୀମାନେ ପ୍ରଥମେ ଜିମେରୱାଲ୍ଡ଼ଠାରେ ଏକ ସମ୍ମିଳନୀ ଡାକିଲେ । ଏହିଠାରେ କେତେକ ସଚ୍ଚା ଅନ୍ତର୍ଜାତିକବାଦୀଙ୍କୁ ନେଇ ଲେନିନ୍ ଏକ ବାମପନ୍ଥୀଦଳ ଗଢ଼ିଥିଲେ । ୧୯୧୬ ରେ ସୁଇଜରଲାଣ୍ଡର କିଏନ୍ଥାଲ ବୋଲି ଏକ ପଲ୍ଲୀଗ୍ରାମରେ ଦ୍ୱିତୀୟବାର ସମ୍ମିଳନୀ ହେଲା । ଏଥିରେ ମଧ୍ୟ ବଲ୍‌ସେଭିକ୍‌ମାନେ ଓ ଲେନିନ୍ ସୁବିଧାବାଦକୁ ନିର୍ମୂଳ କରି ପାରିଲେ ନାହିଁ । ମାତ୍ର ଏହି ଦୁଇଟି ସମ୍ମିଳନୀ ପ୍ରସ୍ତୁତ ଦୁଇଟି ଦଳରେ ବିଭକ୍ତ ହୋଇଗଲା, ଯାହାକୁ ନେଇ ଲେନିନ୍ ୧୯୧୯ରେ ସୁବିଧାବାଦୀ ଦ୍ୱିତୀୟ ଅନ୍ତର୍ଜାତିକ ପରିବର୍ତ୍ତେ ଏକ ତୃତୀୟ ବା କମ୍ୟୁନିଷ୍ଟ ଅନ୍ତର୍ଜାତିକ ଗଢିଲେ ।

ୟୁରୋପର କଟ୍‌ସ୍କି ପନ୍ଥୀଙ୍କ ପରି ଟ୍ରଟ୍‌ସ୍କି ଓ ମାରତୋଭ୍ ଲେନିନ୍ ଓ ବଲ୍‌ସେଭିକ୍‌ମାନଙ୍କର ଯୁଦ୍ଧ ନୀତି ଓ ସାମ୍ୟବାଦର ପ୍ରତିରୋଧ କରୁଥିଲେ । ମେନ୍‌ସେଭିକ୍ ଓ ସୋସାଲିଷ୍ଟ ରିଭଲ୍ୟୁସନାରିମାନେ ୧୯୧୪ର ସାମ୍ରାଜ୍ୟବାଦୀ ଯୁଦ୍ଧକୁ ସାହାଯ୍ୟ କଲେ ।

ଏତିକିବେଳେ ଯୁଦ୍ଧକାଳୀନ ଜରୁରୀ ଅବସ୍ଥା ବାହାନାରେ ଜାରଶାହୀ ପୁଲିସ୍ ଋଷ୍‌ରେ ଯେଉଁ ପ୍ରକାର ଅଭିନବସଙ୍ଗଠିତ ଆନ୍ଦୋଳନ ଚାଲିଥିଲା ତାକୁ ବେଆଇନ କରିଦେଲା । ଖବର କାଗଜ, ସଭା ସମିତି, ଶୋଭାଯାତ୍ରା ଉପରେ ନୂଆ ନୂଆ କଟକଣାମାନ ଜାରି କଲା ଓ

Digitized by srujan ka@gmail.com

ଦ୍ୱାରା ବଲ୍‌ଶେଭିକ୍‌ମାନେ ସାମ୍ରାଜ୍ୟବାଦୀ ଯୁଦ୍ଧ ବିରୁଦ୍ଧରେ ଯିବାକୁ ସେମାନଙ୍କୁ ଗୌରବ ବଢ଼ିଲା । ଶତ୍ରୁମାନେ ବଲ୍‌ଶେଭିକ୍‌ମାନଙ୍କୁ ଧରି ନେଇ ସୁଦୂର ସାଇବେରିଆକୁ ପଠାଇଦେଲେ । ଷ୍ଟାଲିନ୍ ପ୍ରଭୃତି ଲେନିନ୍‌ଙ୍କ ପ୍ରଧାନ ପ୍ରଧାନ ସାଥୀ ଓ ସହକର୍ମୀ ନିର୍ବାସିତ ହେଲେ । ଅଳ୍ପ ସଂଖ୍ୟକ ବଲ୍‌ଶେଭିକ୍ ଲୁଚି ଛପି ରହି ବିପ୍ଳବର ଧାରାକୁ ବଞ୍ଚାଇ ରଖିଥିଲେ । ଲେନିନ୍ ଏହି ସମୟରେ ବିଦେଶରେ ଗୁପ୍ତ ପୁଲିସଙ୍କ ହାତରୁ ନିଜକୁ ପ୍ରାୟ ମୁକ୍ତିରେ ରଖାଇ ରୁଷ୍‌ର ଜାରବାଦୀ ଓ ଯୁରୋପର ପ୍ରତ୍ୟେକ ଦେଶର ସୁବିଧାବାଦୀଙ୍କୁ ପଦାରେ ପକାଇ ଦେବାକୁ ବଦ୍ଧପରିକର ହେଲେ ।

ଯୁଦ୍ଧର ରୂପ କ'ଣ ? କେଉଁ ଯୁଦ୍ଧ ଜନଯୁଦ୍ଧ, କେଉଁ ଯୁଦ୍ଧ ସାମ୍ରାଜ୍ୟବାଦୀ ଯୁଦ୍ଧ ? କେଉଁ ଯୁଦ୍ଧ ନ୍ୟାଯ୍ୟ ଓ କେଉଁ ଯୁଦ୍ଧ ଅନ୍ୟାଯ୍ୟ ? ଏହି ବ୍ୟାଖ୍ୟା କରି ଲେନିନ୍ ଉଦ୍‌ଭ୍ରାନ୍ତ ମାର୍କ୍‌ସ୍‌ପନ୍ଥୀମାନଙ୍କୁ ବାଟକୁ ଆଣିଲେ ଓ ମେନ୍‌ଶେଭିକ୍, ଜର୍ମାନର ଶ୍ରମିକଦଳ ପ୍ରଭୃତି ବୁର୍ଜୁଆ ଶ୍ରେଣୀର ଗୁପ୍ତଚର ମାନଙ୍କ ବିପ୍ଳବୀ—ମୁଖା ଖୋଲି ଦେଲେ । ଏହାର ଫଳରେ ଅଧିକରୁ ଅଧିକ ଲୋକେ ଓ ମଜଦୁର ୧୯୧୪ ମସିହା ଯୁଦ୍ଧକୁ ସାମ୍ରାଜ୍ୟବାଦୀ ଯୁଦ୍ଧ ବୋଲି ଜାଣିପାରିଲେ । ବିଭିନ୍ନ ସମୟରେ ପ୍ରବନ୍ଧ ଲେଖି ଓ "ସାମ୍ରାଜ୍ୟବାଦ—ପୁଞ୍ଜିବାଦର ଚରମାବସ୍ଥା" ନାମକ ବହି ଲେଖି ଲେନିନ୍ ନୂଆ ଅବସ୍ଥାରେ ମାର୍କ୍‌ସ୍‌ବାଦକୁ ପୁନଃ ପ୍ରତିଷ୍ଠିତ କରିଥିଲେ । ଏହାର ଫଳରେ ଋଷ୍‌ର ମଜଦୁର ଶ୍ରେଣୀ ଭିତରେ ଦିନକୁ ଦିନ ବୈପ୍ଳବିକ ଚେତନା ବଢ଼ିବାରେ ଲାଗିଲା ଓ ଯୁଦ୍ଧ ପରି ଅସ୍ୱାଭାବିକ ସମୟରେ ଏବଂ ଜାରଶାହୀ ଶାସନର ଅଦମ୍ୟ ଶୋଷଣ ସତ୍ତ୍ୱେ ଋଷ ଜନତା ବିପ୍ଳବ ଅଭିମୁଖୀ ହୋଇ ଚାଲିଲେ । ଏଥିଲାଗି ଋଷ ବିପ୍ଳବ ଓ ଲେନିନ, ଷ୍ଟାଲିନ ବା ବଲ୍‌ଶେଭିକ୍ ପାର୍ଟି ଯେମିତି ଖଣ୍ଡେ ସୂତାରେ ଗୁନ୍ଥା ସେହିପରି ଜଣାପଡ଼େ । କାରଣ ଲେନିନ୍ ଓ ଷ୍ଟାଲିନ୍ ଋଷ ବିପ୍ଳବର ସଂଗଠନ, ପରିଚାଳନା, ବିଜୟ ଓ ସଂରକ୍ଷଣରେ ଯେଉଁ ଗାଢ଼ ଯତ୍ନଶୀଳ କରିଛନ୍ତି ତାହା କରି ନ ଥିଲେ ଋଷ ଆଜି ସୋଭିଏଟ୍ ଋଷରେ ପରିଣତ ହୋଇ ନ ଥାନ୍ତା ବା ଦୁନିଆରେ ସର୍ବ ପ୍ରଥମ ଶ୍ରମୀ ମଜଦୁର ରାଜ୍ୟ ହୋଇ ପାରି ନ ଥାନ୍ତା । ଏହାର ମଧ୍ୟ

Digitized by srujan ka@gmail.com

ବୁର୍ଜୁଆର ଗଣତାନ୍ତ୍ରିକ ଆନ୍ଦୋଳନ, ମଜଦୁର ଶ୍ରେଣୀର ସାମ୍ୟବାଦୀ ଆନ୍ଦୋଳନର ଯଥାର୍ଥ ପଥ ନିର୍ଦ୍ଦିଷ୍ଟ ହୋଇ ପାରି ନଥାନ୍ତା ।

'ରକ୍ତ ରବିବାର'ର ଘଟଣାରୁ ଜାର ନିକୋଲାସ ବାରମ୍ବାର ସ୍ୱପ୍ନ ଦେଖି ଥରି ଉଠୁଛନ୍ତି । ତାଙ୍କ ଦେହ ଉପରର ମୁଣ୍ଡକୁ ବଲ୍ସେଭିକମାନେ ଛିଣ୍ଡାଉଛନ୍ତି —ନିଜ ଆଗାମୀ ବଂଶନାଶ ଓ ରାଜ୍ୟ ନାଶର ଦୁଃସ୍ୱପ୍ନରେ ଶିହରି ଉଠନ୍ତି ।

ଯୁଦ୍ଧ ଘୋଷଣା କରି ଜାର୍ ନିକୋଲାସ୍ ଅଷ୍ଟ୍ରିଆ ଏବଂ ଜର୍ମାନ ମାରିଲେ । ମୁଷ୍ଟିମେୟ ଦେଶକୁ ଛାଆଁ କରି ଶତ୍ରୁବଳକୁ ଖର୍ବ କରିଦେବେ, ଏହାହିଁ ହେଲା ଜାର୍ ନିକୋଲାସ୍ ଓ ତାଙ୍କ ରାଣୀଙ୍କର ସବୁ ମନ୍ତ୍ରଣାର କଳ୍ପନା । ରାଣୀଙ୍କର ଆଉ ରାଜାଙ୍କର ଅତି ବିଶ୍ୱସ୍ତ ହେଲେ ରାସ୍‌ପୁଟିନ୍ ନାମକ ଏକ ଭଣ୍ଡ ତପସ୍ୱୀ । ରାସ୍‌ପୁଟିନ୍ ଯେ ଅସାଧ୍ୟ ସାଧନ କରି ପାରନ୍ତି, ଧଳାକୁ କଳା କରି ପାରନ୍ତି—ଏହି ବିଶ୍ୱାସ ରାଜା ଓ ରାଣୀଙ୍କର ଦୃଢ଼ ହେଲା ଏବଂ ରୁଷ ରାଜ୍ୟଶାସନ ଏଣିକି ଏହି ରାସ୍‌ପୁଟିନ୍‌ଙ୍କ ପରାମର୍ଶ ଅନୁସାରେ ରାଣୀଙ୍କ ହୁକୁମରେ ଚାଲିଲା । ରାସ୍‌ପୁଟିନ୍ ରାଣୀଙ୍କ ସହ ମିଳି ରୁଷ ଶାସନର ସୂତ୍ରଧର ହେଲେ । ମନ୍ତ୍ରୀ-ନିଯୁକ୍ତି, ମନ୍ତ୍ରୀ-ବରଖାସ୍ତ ତାଙ୍କରି ଇଙ୍ଗିତରେ ହେଲା । ଲେନିନଙ୍କ ଭାଷାରେ "ବୁଦ୍ଧିହୀନ ରକ୍ତ ପିପାସୁ ନିକୋଲାସ୍" ଏଥର ଆନନ୍ଦରେ ବିଭୋର ହେଲେ । ସବୁ ଦୁଃସ୍ୱପ୍ନ ତାଙ୍କର ଉଭେଇଗଲା । ଏଣିକି ସେ ଦେଖିଲେ ଅଖଣ୍ଡ ରାଜଛତ୍ର ରାଜ ସିଂହାସନରେ ଝୁଲୁଛି । ରୁଷରାଜ୍ୟ ଚାରିଆଡ଼େ ବିସ୍ତାର ଲାଭ କରୁଛି । ରୁଷର ମଜଦୁର ଶ୍ରେଣୀର ଗର୍ବ ଖର୍ବ ହୋଇଛି—ବଲ୍‌ସେଭିକ୍ ପାର୍ଟି ନିର୍ମୂଳ ହୋଇଛି । ପ୍ରକୃତରେ ଯେପରି ରୁଷରାଜ୍ୟ ନିଷ୍କଣ୍ଟକ ।

ରାଜା ଓ ରାଣୀଙ୍କର ଏହି ସ୍ୱପ୍ନ ଅହେତୁକ ନୁହେଁ । ଏ ପର୍ଯ୍ୟନ୍ତ ଯେଉଁମାନେ ଦେଶରେ ବିପ୍ଳବର ଆବାହନ କରି ଆସୁଥିଲେ ସେମାନେ ପୂର୍ବେ ବାରମ୍ବାର ଜାରଙ୍କ ପାଖରେ ମୁଣ୍ଡ ନୁଆଇଁଲେ ସତ, କିନ୍ତୁ ଏଥର ପୁରାପୁରି ଆତ୍ମସମର୍ପଣ କଲେ । ମେନସେଭିକ୍, ସୋସିଆଲିଷ୍ଟ ରିଭଲ୍ୟୁସନାରି

Digitized by srujan ka@gmail.com

କ୍ୟାଡେଟ୍ ପ୍ରଭୃତି ସକଳ ଦଳ ଜାର୍ ନିକୋଲାସ୍‌ଙ୍କ ପୁତ୍ରଙ୍କୁ ସମର୍ଥନ ଦେଲେ ।

ବୁର୍ଜୁଆ ପୁଞ୍ଜିପତିମାନଙ୍କର ଦଳ ଯୁଦ୍ଧ ଉଦ୍ୟମକୁ ହାତକୁ ନେଇ ଶ୍ରମିକ ଓ କୃଷକ ଆନ୍ଦୋଳନକୁ ଯୁଦ୍ଧମୁଖୀ କରିଥିଲେ । ଗାଁ ଗହଳ ଓ ସହରରେ 'ଜେମ୍‌ଷ୍ଟୋଭ୍' ନାମକ ଅନୁଷ୍ଠାନମାନ ଗଢ଼ି ବୁର୍ଜୁଆଶ୍ରେଣୀ ଭାବିଲେ ଯେ ଏହି ଯୁଦ୍ଧରେ ଜୟୀ ହେଲେ ରୁଷରେ ପୁଞ୍ଜିବାଦର ବୁନିଆଦ ଶକ୍ତ ହୋଇଯିବ ।

କିନ୍ତୁ ରୁଷରେ ଯେ ଯୋଡ଼ଏ ବର୍ଷ ହୋଇ ସାରିଛି ଏ କଥା ନିକୋଲାସ୍ ଦେଖି ଦେଖି ପାରିଲେ ନାହିଁ କି ବୁର୍ଜୁଆମାନେ ବୁଝି ବୁଝି ପାରିଲେ ନାହିଁ । ଯେଉଁ ରୁଷ୍‌ରେ ଜାର୍ ନିକୋଲାସ୍, ରାଣୀ, ଭଣ୍ଡତପସ୍ୱୀ ରାସ୍‌ପୁଟିନ୍ ଓ ବୁର୍ଜୁଆ ପୁଞ୍ଜିପତିଶ୍ରେଣୀ ସୁଖର ସୁନେଲି ସ୍ୱପ୍ନରେ ବିଭୋର ହୋଇ ପାରନ୍ତି ସେହି ରୁଷରେ ଶତ ସହସ୍ର ଅତ୍ୟାଚାର ଓ ଦମନର ନିଷ୍ଠୁର ଯନ୍ତ୍ରର ଚକ୍ରାଧୀନ ହୋଇ କୃଷି ମଜଦୁର ଶ୍ରେଣୀ ଇତିହାସକୁ ନୂଆକରି ଗଢ଼ି ତୋଳୁଥାନ୍ତି ।

ଏହି ସତ୍ୟ ବାରମ୍ବାର ପ୍ରମାଣିତ ହେଉଥାଏ । ବୁର୍ଜୁଆମାନେ ଏତେବେଳେ ମଜଦୁରମାନଙ୍କ ଅନୁଷ୍ଠାନ ଭାଙ୍ଗିବାକୁ ଏକ ଘୃଣ୍ୟ ଚକ୍ରାନ୍ତ କଲେ; ଅର୍ଥାତ୍ ଶିଳ୍ପ ଉତ୍ପାଦନରେ 'ମଜଦୁରଦଳ' ନିଯୁକ୍ତ କରିବାର ବାଟ ନେଲେ । ମେନ୍‌ଶେଭିକ୍ ଓ ସୋସିଆଲିଷ୍ଟ୍ ରିଭଲ୍ୟୁସନାରୀମାନେ ତାର ପୂର୍ଣ୍ଣ ସମର୍ଥନ କଲେ । ମାତ୍ର ବଲ୍‌ଶେଭିକମାନେ ଏହାକୁ ପୂର୍ଣ୍ଣ ବହିଷ୍କାର କରିବାକୁ ନିର୍ଦ୍ଦେଶ ଦେବାରୁ ମଜଦୁରମାନେ ଏହି ନିର୍ଦ୍ଦେଶକୁ ଗ୍ରହଣ କଲେ । ଅବଶ୍ୟ ମେନ୍‌ଶେଭିକମାନେ ଅସଂଗଠିତ ମଜଦୁରମାନଙ୍କ ଭିତରେ ନିଜର ପ୍ରତିପତ୍ତି ଅକ୍ଷୁଣ୍ଣ ରଖିଥାନ୍ତି ।

ଡୁମାର ବଲ୍‌ଶେଭିକ ସଭ୍ୟମାନଙ୍କୁ ଗିରଫ କରି ଯେତେବେଳେ ଜାର ବିଚାର କଲେ ସେତେବେଳେ ବଲ୍‌ଶେଭିକ ସଭ୍ୟମାନେ ଯେଉଁ ବୀରତ୍ୱ

Digitized by srujan ka@gmail.com

ଓ ସାହସ ଦେଖାଇ ନରହନ୍ତା ଜାର ଅଦାଲତରେ ଶତ ଲକ୍ଷ ଓ କର୍ମପନ୍ଥାର ବ୍ୟାଖ୍ୟାନ କଲେ ତାହା ମଜଦୁରମାନଙ୍କ ଭିତରେ ଅପୂର୍ବ ଉତ୍ସାହ ଓ ଉନ୍ମାଦନାର ସଞ୍ଚାର କଲା । କେବଳ କାମ୍‌ନେଭ୍ ତୋଷ୍ ଜଣେ ସହ୍ୟ ଏକ ନର୍ଲିକ୍ସ ଅମ୍ବରକ୍ଷାଗତ ନେବାରୁ ସେ ମଜଦୁରମାନଙ୍କର ଅତି ଘୃଣାର ପାତ୍ର ହେଲେ ।

ଯୁବବର୍ଗମାନଙ୍କ ଭିତରେ ବଲ୍ସେ ଦଳ ବଡ ଜଳର ଶକ୍ତି ଓ ସମର୍ଥନ ବଢ଼ାଇବାକୁ ପ୍ରାଣପଣେ ଉଦ୍ୟମ କରୁଥାନ୍ତି । ସରକାରୀ ଦଳଗୁଡ଼ିକ ଛଡ଼ା ଅନ୍ୟ ଯେଉଁସବୁ ଦଳ ସରକାରରେ ଯୋଗ ଦେଇ ନ ଥାନ୍ତି ସେମାନଙ୍କ ଭିତରୁ ବଲ୍‌ସେଭିକ ଦଳ ସୈନ୍ୟ ଓ ନୌବାହିନୀ ଭିତରେ ଗୁପ୍ତ କମିଟିମାନ ଗଢ଼ି ଭବିଷ୍ୟତ ଅନ୍ତର୍ବିପ୍ଳବ ଲାଗି ସୈନ୍ୟବାହିନୀକୁ ସଂଗଠିତ କରିବାରେ ଲାଗିଲେ ।

କୋନ୍‌ଷ୍ଟାନ୍‌ଟରେ ସୈନ୍ୟବାହିନୀର ବଲ୍‌ସେଭିକ ଅନୁଷ୍ଠାନ ଗଢ଼ାଗଲା । ବାଲ୍‌ଟିକ୍ ପ୍ରଦେଶ, ଉତ୍ତରାଞ୍ଚଳମାନଙ୍କରେ ସୈନ୍ୟବାହିନୀ ଭିତରେ ବଲସେଭିକ ଗୁପ୍ତ ଅନୁଷ୍ଠାନ ଗଢି ଉଠିଲା । ଯୁଦ୍ଧରତ ଉତ୍ପୀଡ଼ିତ ସୈନ୍ୟବାହିନୀ ଭିତରେ ସଭାବ ପ୍ରତିଷ୍ଠା କରି କପରି ଜିଜ୍ଞାସୁପକ୍ଷ ଏ ସାମ୍ରାଜ୍ୟବାଦୀ ଯୁଦ୍ଧରେ ବିରୋଧ କରି ନିଜ ନିଜ ଦେଶର ବୁର୍ଜୋୟାଙ୍କ ସରକାରକୁ ଧ୍ୱଂସ କରିଦେବେ, ତାହାର ଉଦ୍ୟମ ଅତି ଦୃଢତାର ସହିତ ବଲସେଭିକମାନେ କରି ପାରିଲେ ।

ମଜଦୁର ଓ ସୈନ୍ୟବାହିନୀ ଭିତରେ ଏହି ପ୍ରବଳ ଆନ୍ଦୋଳନ ହେତୁ ବିପ୍ଳବର ଆୟୋଜନ ଗୁଳୁଥିଲା ସତ; ମାତ୍ର ଅସଂଗଠିତ ମଜଦୁର ଓ ଗାଁ ଗହଳର ଗୃହୀମାନଙ୍କ ଭିତରେ ମେନ୍‌ସେଭିକ୍, ସୋସିଅଲିଷ୍ଟ ରିଭଲ୍ୟୁସନାରୀମାନଙ୍କ ନେତୃତ୍ୱ ବଢ଼ାଯାଇ ଥିବାରୁ ଜାର ଶାସନ ଟିକେ ରହିବାକୁ ବଳ ପାଉଥିଲା ।

କିନ୍ତୁ ତ୍ରୁଟକ ଜାର ସରକାର ଉଦର ଯୁଦ୍ଧ ଅପ୍ରୋଜନ ନ ଥିବା ସତ୍ତ୍ୱେ ଯୁଦ୍ଧରେ ପ୍ରବେଶ କରିଥିଲା । ସୈନ୍ୟବାହିନୀ ଯୁଦ୍ଧଭୂମିରେ ଜଦଦ

Digitized by srujan ka@gmail.com

ସୁଦ୍ଧା ଲଢ଼େଇ କରୁଥିବା ବେଳେ ତା’ ପାଖରେ ହାତ ହତିଆର ନ ଥାଏ, ତା ଶୀତଦିନରେ ଶୀତଲୁଗା ନ ଥାଏ କିମ୍ବା ତା ପାଇଁ ଖାଦ୍ୟ ପଦାର୍ଥ ନ ଥାଏ । ୧୯୦୪ ରୁଷ ଜାପାନ ଯୁଦ୍ଧବେଳେ ରୁଷ ଓ ବିଦେଶୀ ପୁଞ୍ଜିପତିମାନେ ଅତ୍ୟଧିକ ମୁନାଫା ଉଠାଇଥିଲେ । ସୈନ୍ୟାଧ୍ୟକ୍ଷମାନେ ବିଦେଶୀଙ୍କ ନିଜ ଦେଶର ଯୁଦ୍ଧ ସରଞ୍ଜାମ ଚଢ଼ା ଦରରେ କିଣି କରି ଯୁଦ୍ଧ ସରଞ୍ଜାମ ଯାଉଥିବା ସ୍ଥାନରେ ଟେବୋସଥର ତର୍ତ୍ତିକର ପଠାଉଥିଲେ । ଠିକ୍ ଏ ଯୁଦ୍ଧରେ ମଧ୍ୟ ମୁକ୍ତ ବାଜାରରେ ପୁଞ୍ଜିପତିମାନେ ଯୁଦ୍ଧ ସରଞ୍ଜାମ ଯୋଗାଣରେ ଅଜସ୍ର ଅର୍ଥ ଉପାର୍ଜନ କଲେ ।

ରାସପୁଟିନ୍‌ର ଷଡ଼ଯନ୍ତ୍ର ଓ ଜାର୍ ନିକୋଲାସଙ୍କ ମନମୁଖୀ ଶାସନରେ ବୁର୍ଜୁଆ ପୁଞ୍ଜିପତି ଶ୍ରେଣୀ ମଧ୍ୟ ଅସନ୍ତୁଷ୍ଟ ହେଲେ । ଯଦିଓ ଜାର ପୁଞ୍ଜିବାଦର ରକ୍ଷାକର୍ତ୍ତା ତଥାପି ବୁର୍ଜୁଆ ଶ୍ରେଣୀ ନିଜ ହାତକୁ ସୁବିଧାର ଶାସନ କ୍ଷମତା ଆଣିବା ପ୍ରତି ଜାର ବିରୋଧୀ ଥିଲା । ଫଳରେ ବୁର୍ଜୁଆ ଶ୍ରେଣୀ ଜାରଙ୍କ ସ୍ଥଳ ମାଇକେଲ୍ ରୋମାନୋଭଙ୍କୁ ଗାଦିରେ ବସାଇବାଲାଗି ଏକ ଗୁପ୍ତ ଷଡ଼ଯନ୍ତ୍ର କରୁଥିଲେ । ବ୍ରିଟିଶ ଓ ଫରାସୀ ସରକାର ମଧ୍ୟ ଏଥିରେ ରୁଷ ବୁର୍ଜୁଆଙ୍କ ସାହାଯ୍ୟ କରୁଥିଲେ । ରୁଷ ଓ ବିଦେଶୀ ପୁଞ୍ଜିପତି ଶ୍ରେଣୀ ଏହା ଫଳରେ ଦୁଇଟି ଉଦ୍ଦେଶ୍ୟ ସାଧନ କରି ପାରିବେ ବୋଲି ଭାବିଥିଲେ । ପ୍ରଥମରେ ଜାର ନିକୋଲାସ, ରାଣୀ ଓ ରାସପୁଟିନଙ୍କ କବଳରୁ ରୁଷକୁ ରକ୍ଷାକରି ଅଧିକ ଭଲଭାବେ ଯୁଦ୍ଧ ଚଳେଇବେ । ଏପରି ଭାବେ ଅତ୍ୟାଗୁଣୀ ଜାରକୁ ଗାଦିଚ୍ୟୁତ କରି ଆଗାମୀ ଜନବିପ୍ଳବର ଗତିରୋଧ କରିଦେବେ ଓ ଇଙ୍ଗବୁର୍ଜୁଆଙ୍କ ସାହାଯ୍ୟରେ ରୁଷ ପୁଞ୍ଜିବାଦକୁ ବଞ୍ଚାଇ ରଖିବେ ।

ଏହିବେଳେ ରୁଷରେ ବିପ୍ଳବର ସମ୍ଭାବନା ହେଲେ ଏହି କଥା ଜାଣିବାଲାଗି ବ୍ରିଟିଶ ପୁଞ୍ଜିପତିମାନେ ଅତି ବ୍ୟଗ୍ର ହେଉଥାନ୍ତି । କେବଳ ବ୍ରିଟିଶ ନୁହେଁ, ଫରାସୀ ପୁଞ୍ଜିପତିଙ୍କର ମଧ୍ୟ କୁତୂହଳ ହେଉଥାଏ । ତେଣୁ ବ୍ରିଟିଶ ଯୁଦ୍ଧ ପରିଷଦର ମୁଖିଆ ମନ୍ତ୍ରୀ ଲର୍ଡ ମିଲନର ୧୯୧୬-୧୭ ଶୀତ କାଳରେ ରୁଷର ଅବସ୍ଥା ପର୍ଯ୍ୟବେକ୍ଷଣ କରିବାକୁ ରୁଷକୁ ଆସିଲେ । ଚାରିଆଡ଼ ବୁଲି ସବୁକଥା ଅନୁସନ୍ଧାନ କରି ଲର୍ଡ ମିଲନର ବିଲାତକୁ ଯାଇ ମତ ଦେଲେ ଯେ ରୁଷରେ ବିପ୍ଳବ ହେବାର ସମ୍ଭାବନା ନାହିଁ ।

Digitized by srujan ka@gmail.com

ଯୁଦ୍ଧକ୍ଷେତ୍ରରେ ଋଷ ସୈନ୍ୟବାହିନୀ ବାରମ୍ବାର ପରାସ୍ତ ହେଉଥାନ୍ତି । ଯୁଦ୍ଧ ଘୋଷିତ ହେବା ସଙ୍ଗେ ସଙ୍ଗେ ଜର୍ମାନ ସାମ୍ରାଜ୍ୟବାଦ ଡାର୍ଡେନେଲ୍ସ ଉପକୂଳ ଅବରୋଧ କରିଦେଲେ । ସୁଦୂରବ୍ୟାପୀ ଟ୍ରାନ୍ସ ସାଇବେରିଆ ରେଲ୍-ଓ୍ୱେ ଓ ଖୁମ୍ବ ଉତ୍ତରର ମରମାନ୍ସ୍କ୍ ବନ୍ଦର ଛଡ଼ା ଋଷକୁ ଜନସମ୍ପଦ ଆସିବାର ସବୁ ରାସ୍ତା ବନ୍ଦ ହୋଇଗଲା । ଏହି ଦୁଇଟି ରାସ୍ତାରେ ଜନସମ୍ପଦ ଆସିବା ଅତ୍ୟନ୍ତ ସମୟସାପେକ୍ଷ ଓ ବହୁବ୍ୟୟସାଧ୍ୟ । ଋଷରେ ଯନ୍ତ୍ରପାତି ବା ଶିଳ୍ପ ବିକାଶର ପ୍ରସାର ତ କମ ଥିଲା; ତେଣୁ ଯୁଦ୍ଧସାମଗ୍ରୀମାନ ଦିନକୁଦିନ ଅଣ୍ଟିହେବାରେ ଲାଗିଲା । ଋଷରେ ଯେଉଁ ଯୁଦ୍ଧ ସାମଗ୍ରୀ ତିଆରି ହେଲା ସେଗୁଡ଼ିକ ଅତି ନିକୃଷ୍ଟ ଧରଣର ଜିନିଷ ହେଲା । ଯୁଦ୍ଧର ଦ୍ୱିତୀୟ ବର୍ଷ ଅନ୍ତକୁ ଋଷର ଯୁଦ୍ଧ ସାମଗ୍ରୀ ଶେଷ ହୋଇଆସିଲା । ଯେଉଁସବୁ ଗୃହୀନ୍ ସୈନ୍ୟବାହିନୀରେ ଭର୍ତ୍ତି ହୋଇଥିଲେ, ସେମାନେ ନିରସ୍ତ୍ର ହୋଇ ଯୁଦ୍ଧ କରୁଥିଲେ । ହାତରେ ଟିଏ ବନ୍ଧୁକ ନ ଥାଇ, ଜମରରେ ଗୁଳି ନ ଥାଇ ଋଷସୈନ୍ୟ ଯୁଦ୍ଧ କରୁଥିଲେ । ସେମାନେ ଜାର୍‌ଙ୍କ ସିଂହାସନ ଲାଗି, ପୁଞ୍ଜିପତିଙ୍କର ପୁଞ୍ଜି ବିସ୍ତାର ଲାଗି ଜୀବନ ବଳି ଦେବାକୁ ଯାଉଥିଲେ । ସର୍ବୋପରି ଋଷର କୌଣସି ଉନ୍ନତ ସୈନ୍ୟ ସଂଗଠନ ଓ ଯୁଦ୍ଧ ସଂଗଠନ ଯେ ଥିଲା ଏକଥା କହିବା ଲଜ୍ଜାର ବିଷୟ ହେଲା ।

ସବୁ ପରାଜୟ ଓ ଅପମାନକୁ ଜାରତନ୍ତ୍ର ବେଖାତିର କରୁଥିଲେ; ମାତ୍ର ୧୯୧୫ ଗ୍ରୀଷ୍ମ ଓ ଶରତକାଳରେ ଯେଉଁ ପରାଜୟ ହେଲା ସେଥିରୁ ଋଷର ଆଉ ଓଲଟି ଆକ୍ରମଣ କରିପାରିବେ ଏ ଭରସା ଜାରତନ୍ତ୍ରର ରହିଲା ନାହିଁ ।

୧୯୧୬ ବେଳକୁ ଜାର ସୈନ୍ୟବାହିନୀ ସାମାନ୍ୟ କିଛି କସରତ ଦେଖାଇବାରେ ଜାର ଓ ପୁଞ୍ଜିପତି ଶ୍ରେଣୀ ଉତ୍ଫୁଲ୍ଲିତ ହୋଇଥିଲେ । ମାତ୍ର ସାରା ପୋଲାଣ୍ଡ, ଲିଥୁଆନିଆ ଓ କୋରଲାଣ୍ଡ ପ୍ରଭୃତି ଅଞ୍ଚଳକୁ ହରାଇ ଜାରତନ୍ତ୍ରର ଅଣ୍ଟା ଭାଙ୍ଗି ପଡ଼ିଲା । ଆଉ ସେ ଭଙ୍ଗା ଅଣ୍ଟା ଶତ ଚେଷ୍ଟାରେ ବି ସିଧା ହେଲା ନାହିଁ ।

Digitized by srujan ka@gmail.com

# ଫେବୃଆରୀ ବିପ୍ଳବ

ଜାରତନ୍ତ୍ର ଏକ ବିରାଟ ସଙ୍କଟର ସମ୍ମୁଖୀନ ହୋଇଥିଲା । ଋଷ ବୁର୍ଜୁଆ, ପୁଞ୍ଜିପତି ଶ୍ରେଣୀ ଜାର୍ ନିକୋଲାସ୍‌ଙ୍କ ଜାଗାରେ ମାଇକେଲ୍ ରୋମାନୋଭ୍‌ଙ୍କୁ ବସାଇ ଏ ସଙ୍କଟକୁ ଏଡ଼ିବାର ଉଦ୍ୟମ କରୁଥିଲେ । ଋଷର ମଜଦୁର ଶ୍ରେଣୀ, ଋଷ ସୈନ୍ୟବାହିନୀ ନିଜର ବୈପ୍ଳବିକ ଉପାୟରେ ଏ ସଙ୍କଟର ସମାଧାନ କଲେ । ସେ ସମାଧାନର ପ୍ରଥମ ଅଧ୍ୟାୟରୂପେ ଜାର୍ ନିକୋଲାସ୍ ଗଲେ, ରାଣୀ ଗଲେ, ରାସପୁଟିନ୍ ଗଲେ । ମାଇକେଲ୍ ରୋମାନୋଭ୍ କିମ୍ବା ଜାର୍‌ବଂଶର କୌଣସି ଦାୟାଦ ଲାଗି ରାଜସିଂହାସନ ଦୂରର ବସ୍ତୁ ହେଲା ।

ଆଜି ପୁଣି ଜାନୁଆରୀ ୯ ତାରିଖ । ଯେଉଁ ଜାନୁଆରୀ ୯ ତାରିଖ ଥରେ ୧୯୦୫ [illegible]ରେ ଆସିଥିଲା ଏବଂ ଯେଉଁଦିନ ଜାର ନିକୋଲାସ ମଣିଷ ରକ୍ତ ଦେଖି ପ୍ରାସାଦରେ ବସି ଆନନ୍ଦରେ ମଦ ଖାଇ ବିଭୋର ହୋଇଥିଲେ ତାହାର ସ୍ମୃତିକୁ ଚିର ଜାଗ୍ରତ ରଖିବା ଲାଗି ଋଷମଜଦୁର ଶ୍ରେଣୀ ୧୯୧୭ ଜାନୁଆରୀ ୯ ତାରିଖ ଦିନକୁ ଅତି ଉତ୍ସାହର ସହିତ ପାଳନ କରିବାପାଇଁ ବାହାରିଛନ୍ତି । ପିଟର୍‌ସବର୍ଗ ବା ପେଟ୍ରୋଗ୍ରାଡ୍‌ର ବଲ୍‌ଶେଭିକ୍

Digitized by srujan ka@gmail.com

କମିଟି ମଜଦୁରମାନଙ୍କୁ ସଭା ଶୋଭାଯାତ୍ରା କରି ଯୁଦ୍ଧ ବିରୁଦ୍ଧରେ ଅବାଜ ଉଠାଇବାଲାଗି ନିର୍ଦ୍ଦେଶ ଦେଲେ । ପେଟ୍ରୋଗ୍ରାଡ୍ ସହର ସଭଙ୍ଗ୍ରାରେ ସହିତ ହୋଇ ଗୃହଅଟ୍ଟ ମଜଦୁରର ବୈପ୍ଳବିକ ଗାନରେ ମୁଖରିତ ହୋଇ ଉଠିଲା । ଭାଇବର୍ଗ ଓ ନାର୍ଭାଜିଲ୍ଲା ସମେତ ପେଟ୍ରୋଗାଡ଼ର ସମସ୍ତ ଶିଳ୍ପ ବନ୍ଦ ହୋଇଗଲା । ଖାଲି ପେଟ୍ରୋଗ୍ରାଡ୍ ନୁହେଁ, ମସ୍କୋ, ବାକୁ, ନିଜ୍ନିନୋଭ୍ଗୋରଡ଼ ପ୍ରଭୃତିରେ ମଜଦୁରମାନେ ଧର୍ମଘଟ ଓ ସଭା, ଶୋଭାଯାତ୍ରା କଲେ ।

ମେନ୍‌ସେଭିକ୍ ଓ ସୋସିଆଲିଷ୍ଟ୍ ରିଭଲ୍ୟୁସନାରୀମାନେ କହିଲେ ଯେ, ଫେବ୍ରୁୟାରୀ ୧୪ ତାରିଖରେ ମଜଦୁରମାନେ ଡୁମା ପାଖକୁ ଚାଲନ୍ତୁ । ବଲ୍‌ସେଭିକ୍‌ମାନେ ଏହାର ବିରୋଧ କରି ସଭା, ଶୋଭାଯାତ୍ରା ଓ ଧର୍ମଘଟର କାର୍ଯ୍ୟକ୍ରମ ରଖିଲେ । ମଜଦୁର ଶ୍ରେଣୀ ବଲ୍‌ସେଭିକ୍‌ମାନଙ୍କର ଏହି ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ପାଳନ କଲେ ।

ପେଟ୍ରୋଗ୍ରାଡ୍ ସହରର ପୁଟିଲଭ୍ କାରଖାନାରେ ଫେବ୍ରୁୟାରୀ ୧୮ ତାରିଖରେ ଯେଉଁ ଧର୍ମଘଟ ହେଲା ତାହା ଶୀଘ୍ର ଶୀଘ୍ର ଗୃହଅଟ୍ଟ ବ୍ୟାପିଗଲା । ଫେବ୍ରୁୟାରୀ ୨୩ ତାରିଖ ଦିନ "ବିଶ୍ୱ-ନାରୀ-ଦିବସ" । ବଲ୍‌ସେଭିକ୍ କମିଟି ନାରୀମାନଙ୍କୁ ସେଦିନ କାମ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ । କେବଳ ମଜୁର-ନାରୀ ନୁହେଁ, ପେଟ୍ରୋଗ୍ରାଡ୍‌ର ସମସ୍ତ ପୁରୁଷ ମଜଦୁର ମଧ୍ୟ ଏହି ଧର୍ମଘଟରେ ଯୋଗ ଦେଲେ । ବେଳୁଁବେଳ ଏହି ଓଡ଼ିପ୍ର ଧର୍ମଘଟ ରୁହି ଏକ ବିରାଟ ରାଜନୈତିକ ଧର୍ମଘଟରେ ପରିଣତ ହେବାରେ ଲାଗିଲା । ଫେବ୍ରୁୟାରୀ ୨୪ ତାରିଖ ବେଳକୁ ପ୍ରାୟ ୨ ଲକ୍ଷ ମଜଦୁର ଧର୍ମଘଟରେ ଯୋଗ ଦେଲେ । ୨୫ ତାରିଖ ଦିନ ସାରା ପେଟ୍ରୋଗ୍ରାଡ୍ ସହର ହୁଲସ୍ଥୁଲ କମ୍ପି ଉଠିଲା । ସବୁ କାମ ବନ୍ଦ । ଲକ୍ଷ ଲକ୍ଷ ମଜଦୁର ରାସ୍ତାରେ ଶୋଭାଯାତ୍ରା କରୁଛନ୍ତି । ମଜଦୁର ଶ୍ରେଣୀ ବିପ୍ଳବରେ ପଦାର୍ପଣ କଲା । ସହରରେ ମଜଦୁରମାନଙ୍କର ଏହି ଆନ୍ଦୋଳନ ଫଳରେ ମଫସଲରେ କୃଷୀମାନେ ମଧ୍ୟ ବିଦ୍ରୋହ କରି ଉଠିଲେ ।

Digitized by srujan ka@gmail.com

ଫେବୃୟାରୀ ୨୫ ତାରିଖ ଦିନ ଜାର୍ ନିକୋଲାସ୍ ସୈନ୍ୟାଧ୍ୟକ୍ଷ ଖାବାଲୋଭ୍‌ଙ୍କୁ ହୁକୁମ ଦେଲେ, "କାଲିଠାରେ ତୁମେ ରାଜଧାନୀରେ ସବୁ ଗୋଳମାଳ ବନ୍ଦ କର।"

୨୬ ତାରିଖ ସକାଳେ ଖାବାଲୋଭ୍ ରାଜଧାନୀ ପେଟ୍ରୋଗ୍ରାଡ୍ ସହରର କେନ୍ଦ୍ରସ୍ଥାନମାନଙ୍କରେ ସଶସ୍ତ୍ର ସୈନ୍ୟବାହିନୀ ସଜ୍ଜିତ କରି ରଖିଲେ। ବଡ଼ ବଡ଼ କୋଠାମାନଙ୍କ ଉପରେ ମେସିନ୍‌ଗନ୍ ସବୁ ଖଞ୍ଜା ହୋଇଥାଏ। ମଜଦୁରମାନଙ୍କ ରାସ୍ତା ବନ୍ଦ କରିଦେବାପାଇଁ ନେଭାନଦୀର ଏକ ପାର୍ଶ୍ୱରେ ପୁଲିସମାନେ ଜଗୁଆଳି ଥାଆନ୍ତି।

ଖାବାଲୋଭ୍ ଜାରଙ୍କୁ ଆନନ୍ଦରେ ଲେଖିଲେ, "ଆଜି ଫେବୃୟାରୀ ୨୬ ତାରିଖ ସକାଳଠାରୁ ସହରର ଗୃହଅଡ଼େ ଶାନ୍ତ ହୋଇଛି।"

୨୫ ତାରିଖ ଠାରୁ ଗୁପ୍ତ ପୁଲିସ ବିଭାଗ ଯାହାକୁ ଇଚ୍ଛା ତାକୁ ଗିରଫ କରି ଜେଲଖାନାରେ ଭର୍ତ୍ତି କରୁଥାନ୍ତି। ପେଟ୍ରୋଗାଡ୍‌ର ବଲ୍‌ସେଭିକ୍ କମିଟିର ପାଞ୍ଚଜଣ ସଭ୍ୟ ମଧ୍ୟ ଗିରଫ ହୋଇଯାଇଥାନ୍ତି। ହଜାର ହଜାର ସଂଖ୍ୟାରେ ଗିରଫଦାରୀ ଚାଲିଥାଏ। ଗୁଳି, ବନ୍ଧୁକ, ମେସିନଗନ୍‌ରେ ରକ୍ତର ସମୁଦ୍ର ସୃଷ୍ଟି କରି ଜାର୍ ନିକୋଲାସ୍ ବିପ୍ଳବ ଦମନ କରିବାକୁ ବଦ୍ଧପରିକର ଥାଆନ୍ତି।

ଫେବୃୟାରୀ ୧୪ ତାରିଖରେ ଡୁମା ପାଖରେ ସମବେତ ହେବା ପାଇଁ ମେନ୍‌ସେଭିକ୍‌ମାନେ ଶ୍ରମିକମାନଙ୍କୁ ନିର୍ଦ୍ଦେଶ ଦେଇଥାନ୍ତେ। ସେମାନେ କହୁଥିଲେ ଯେ ଏହା ଫଳରେ ଉଚ୍ଚ ବୁର୍ଜୁଆ ଶ୍ରେଣୀ ଯେଉଁ ସରକାର ଗଢ଼ିଛନ୍ତି ସେମାନେ ସାହସ ପାଇ ଜାର୍ ବିରୁଦ୍ଧରେ ଯିବେ ଓ ବିପ୍ଳବର ନେତୃତ୍ୱ ନେବେ। ମାତ୍ର ବଲ୍‌ସେଭିକମାନଙ୍କର ଦୃଢ଼ ମତ ଥିଲା ଯେ ମଜଦୁର ଶ୍ରେଣୀହିଁ ବିପ୍ଳବରେ ମୁଖିଆ ହେବେ ଏବଂ ୧୪ ତାରିଖ ଦିନ ଡୁମା ନିକଟରେ ସମାବେଶ ହେବା ବାଟ ଛାଡ଼ି ଖୋଲାଖୋଲି ବିପ୍ଳବର ରାସ୍ତା ଧରିବେ। ୧୪ ତାରିଖ ପରେ ଉକ୍ତ ମଜଦୁର ଶ୍ରେଣୀ ଖାଲି ଧର୍ମଘଟରେ

Digitized by srujan ka@gmail.com

ବର୍ଷାଧିକ ରହିଲେ ନାହିଁ । ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ସେମାନେ ଜାର୍ ପୁଲିସର ମୁକାବିଲା କରିବାକୁ ପ୍ରସ୍ତୁତ ହେଲେ । ଏଥିରେ ମେନ୍‌ସେଭିକ୍‌ମାନେ ସନ୍ତ୍ରସ୍ତ ହୋଇ ଏ ବିପ୍ଳବର ଜ୍ୱଳନ୍ତ ବର୍ତ୍ତିକୁ ନିଭେଇବାକୁ ଚେଷ୍ଟା କଲେ ଏବଂ ୧୯୦୫ ପରେ ପୁଣି ଥରେ କହିଲେ ଯେ ମଜଦୁର ଶ୍ରେଣୀ ପକ୍ଷରୁ ବିପ୍ଳବ କରିବା ଉଚିତ ହେବ ନାହିଁ ।

ସୋସିଆଲିଷ୍ଟ୍ ରିଭୋଲ୍ୟୁସନାରୀ ଓ ସେମାନଙ୍କ ନେତା କେରେନ୍‌ସ୍କି ମଧ୍ୟ ଏହି ଗୀତ ଗାଇଲେ ! କେରେନ୍‌ସ୍କି ବୁର୍ଜୁଆ ଶ୍ରେଣୀକୁ ନିବେଦନ କରି କହିଲେ ଯେ ସେମାନେ ଅଧିକ ସାହସର ସହିତ ସମସ୍ୟାର ସମାଧାନ କରନ୍ତୁ ଓ ଆନ୍ଦୋଳନର ନେତୃତ୍ୱ ନିଅନ୍ତୁ ।

କିନ୍ତୁ ଦଳର ଏହି ଅବସ୍ଥା ବେଳେ ଫେବୃଆରୀ ବିପ୍ଳବ ସମୟରେ ସଂଗଠନ ଦୃଷ୍ଟିରୁ ବଲ୍‌ସେଭିକ୍‌ଦଳ ଦୁର୍ବଳ ଥିଲା । ଦଳର ବହୁତ ଶକ୍ତିଶାଳୀ ଶାଖାଗୁଡ଼ିକୁ ଜାର୍ ସରକାରର ପୁଲିସ ଲାଗି ଚୂରମାର କରୁଥାଏ । ବଡ଼ ବଡ଼ ନେତା ଓ ସଂଗଠକମାନେ ବହୁ ସଂଖ୍ୟାରେ ଜେଲ କିମ୍ବା ନିର୍ବାସନରେ ଥାଆନ୍ତି । ଲେନିନ୍ ବାଧ୍ୟ ହୋଇ ଅଷ୍ଟ୍ରିଆରୁ ସୁଇଜରଲାଣ୍ଡକୁ ଚାଲିଯାଇଥାନ୍ତି । ଏତେ ଦୂରରୁ ମଧ୍ୟ ସେ ଅବସ୍ଥାକୁ ଅନୁଧ୍ୟାନ କରି ନିର୍ଦ୍ଦେଶ ଦେଉଥାନ୍ତି । ଷ୍ଟାଲିନ୍ ଓ ସ୍ୱେର୍ଡ୍‌ଲଭ୍ ପ୍ରଭୃତି ସୁଦୂର ସାଇବେରିଆ ବରଫରେ ନିର୍ବାସନ ଦଣ୍ଡ ଭୋଗୁଥାନ୍ତି ।

ତଥାପି ବଲ୍‌ସେଭିକ୍ ଦଳର ସ୍ଥାନ ବଢ଼ି ଚାଲିଥାଏ । ଦଣ୍ଡିତ, ନିର୍ବାସିତ ସାଥୀମାନଙ୍କ ସ୍ଥାନ ସଙ୍ଗେ ସଙ୍ଗେ ନୂଆ ସାଥୀ ପୂରଣ କରୁଥାନ୍ତି । ଏତେ ଅତ୍ୟାଚାର ଓ ଦମନ ସତ୍ତ୍ୱେ ବଲ୍‌ସେଭିକ୍‌ମାନେ ନିଜର କେନ୍ଦ୍ର ଅନୁଷ୍ଠାନକୁ ରକ୍ଷା କରିଥାନ୍ତି ।

ମୋଲଟୋଭ୍ କେନ୍ଦ୍ର ଅନୁଷ୍ଠାନର ନେତୃତ୍ୱ ଦେଉଥାନ୍ତି । **ଆନ୍ଦୋଳନର ମୁଅଟରେ ରୁଷି ମେନ୍‌ସେଭିକ୍ ଓ ସୋସିଆଲିଷ୍ଟ୍ ରିଭୋଲ୍ୟୁସନାରି-ମାନେ କେବେକେବେ ଆନ୍ଦୋଳନର କଥା କହୁଥାନ୍ତି । ମାତ୍ର ଅସ୍ତ୍ର**

Digitized by srujan ka@gmail.com

ଶସ୍ତ୍ର ଧରି ଜାରଶାହୀ ଶାସନକୁ ଧ୍ୱଂସ କରିବାଲାଗି ମଜଦୁର ଶ୍ରେଣୀକୁ କେବେହେଲେ ନିର୍ଦ୍ଦେଶ ଦେଉ ନ ଥାନ୍ତି । ଏକମାତ୍ର ବଲ୍‌ଶେଭିକ୍‌ପାର୍ଟି ସଶସ୍ତ୍ର ବିଦ୍ରୋହର ନିର୍ଦ୍ଦେଶକୁ ଗ୍ରହଣକରି ସଭା, ଶୋଭାଯାତ୍ରା, ପ୍ରଚାରପତ୍ର ଓ ସଂଗଠନରେ କାର୍ଯ୍ୟକାରୀ କରୁଥାନ୍ତି ।

ଏହାର ଫଳରେ ମଜଦୁରମାନେ ମେନ୍‌ସେଭିକ୍‌ମାନଙ୍କର 'ଡୁମାକୁ ରକ୍ଷାକର' ଧ୍ୱନି ନ ଉଠାଇ "ଏକଛତ୍ର ଶାସନ ଧ୍ୱଂସହେଉ", "ଆମେ ଚାହୁଁ ଶାନ୍ତି, ରୁଟି ଓ ଜମି" ପ୍ରଭୃତି ଧ୍ୱନି ଉଠାଇଲେ ।

ଖାଦ୍ୟାଭାବକୁ ଉତ୍ତର ଦେବାଲାଗି ୨୨ ତାରିଖ ଦିନ ପେଟ୍ରୋଗ୍ରାଡ୍ ବା ପିଟରସବର୍ଗର ମଜଦୁର ଅଗ୍ରସର ହେଲେ ।

ଶ୍ରମିକଶ୍ରେଣୀ ସମୁଦ୍ର ପରି ନେଭସ୍କି ଅଭିମୁଖେ ମାଡ଼ି ଚାଲିଲେ । ଜନସାଧାରଣ ପୁଲିସ ଉପରକୁ ଗୁଳି ଚାଳିଲା । ଶ୍ରମିକମାନେ ମଧ୍ୟ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଶତ୍ରୁର ସମ୍ମୁଖୀନ ହେଲେ । ଏହିବେଳେ ଗୋଟିଏ ରକ୍ଷୀ ବାହିନୀର ୪ର୍ଥ ରେଜିମେଣ୍ଟ ବିଦ୍ରୋହ କରି ଉଠିଲେ । ଯେଉଁ ଘୋଡ଼ସବାର ପୋଲିସ ଶ୍ରମିକମାନଙ୍କ ଉପରେ ଗୁଳି କରୁଥିଲେ ସେମାନଙ୍କ ଉପରେ ଏହି ରେଜିମେଣ୍ଟ ଓଲଟି ଗୁଳିମାଡ଼ ଚଳାଇଲେ । ମାତ୍ର ସୈନ୍ୟବାହିନୀର ଅଫିସରମାନେ ଏମାନଙ୍କୁ ଗିରଫ କରି ନେଇ ଜେଲରେ ପୁରାଇ ଦେଲେ । ତାହା ଭିବୋର୍ଗ୍‌ଜିଲାର ବିଦ୍ରୋହ ଓ ବିପ୍ଳବୀ ଜନତାର ପ୍ରଭାବରେ ପ୍ରଥମ ଦିନର ଯୁଦ୍ଧ ଶେଷ ହେଲା ।

ମାତ୍ର ତାପରଦିନର ପ୍ରତ୍ୟେକ ଗୁଳି ମଜଦୁରଙ୍କୁ ଅଧିକ ବିଦ୍ରୋହୀ କରୁଥିଲା । ପ୍ରତ୍ୟେକ ମଜଦୁରର ରକ୍ତ ଅଧିକ ବେଶୀ ରକ୍ତ ଦାନ ଲାଗି ଅନ୍ୟ ମଜଦୁରମାନଙ୍କୁ ଡାକରା ଦେଉଥିଲା ଏବଂ ମଜଦୁରଶ୍ରେଣୀ ସେଥିଲାଗି ତିଆରି ହୋଇ ଯୁଦ୍ଧ ଭୂମିକୁ ବାହାରି ପଡ଼ୁଥିଲେ । ୧୯୦୫ ବିପ୍ଳବରେ ମଜଦୁର ଶ୍ରେଣୀ ଯେଉଁ ଭୁଲ କରିଥିଲେ ଏଥର ସେଥିଲାଗି ଖୁବ୍ ସାବଧାନ ଥିଲେ । ଏଥର ବିପ୍ଳବୀ ମଜଦୁର ଶ୍ରେଣୀର ପ୍ରଥମ ଉଦ୍ଦେଶ୍ୟ ହେଲା ସୈନ୍ୟ-

Digitized by srujan ka@gmail.com

ବାହିନୀକୁ ନିଜ ସାଙ୍ଗକୁ ନେବା । ମଜଦୁର ପୁରୁଷ, ଅନେକ କ୍ଷେତ୍ରରେ ବି ମଜଦୁର ନାରୀ ସୈନ୍ୟମାନଙ୍କ ନିକଟକୁ ଯାଇ ସେମାନଙ୍କୁ ଅସ୍ତ୍ରଶସ୍ତ୍ର ତ୍ୟାଗ କରିବାକୁ ଅନୁରୋଧ କରନ୍ତି ଏବଂ ନିଜ ସ୍ୱର୍ଗ ଭଉଣୀର ରକ୍ତରେ ନିଜର ପବିତ୍ର ହସ୍ତକୁ କଳଙ୍କିତ ନ କରିବାକୁ ନିବେଦନ କରନ୍ତି । ସୈନିକର ହୃଦୟ ତରଳିଯାଏ । ସେ ନିଜ ଜନତାକୁ ଦମନ କରି ମଧ୍ୟ ଅସ୍ତ୍ରଶସ୍ତ୍ର ପ୍ରୟୋଗ ବନ୍ଦ କରେ; ବରଂ ସୁଯୋଗକ୍ରମେ ବିପ୍ଳବୀ ମଜଦୁରଶ୍ରେଣୀ ସଙ୍ଗେ ଯୋଗ ଦେଇ ନିଜର ବନ୍ଧୁକକୁ ଶତ୍ରୁର ଛାତିକୁ ଦେଖାଇ ଦିଏ ।

ପେଟ୍ରୋଗ୍ରାଡ଼ର ନୂଆ ସୈନ୍ୟବାହିନୀ ଉପରେ ମଜଦୁରଙ୍କ ନିବେଦନରେ ଅତ୍ୟନ୍ତ ଉତ୍ତେଜନାର ସଞ୍ଚାର ହେଲା । ଫେବୃଆରୀ ୨୭ ତାରିଖ ସକାଳେ ମୋଟେ ଦଶ ହଜାର ସୈନ୍ୟ ବିପ୍ଳବ ପକ୍ଷରେ ଯୋଗ ଦେଇଥିଲେ; ମାତ୍ର ସନ୍ଧ୍ୟାବେଳକୁ ବିପ୍ଳବୀ ସୈନ୍ୟଙ୍କ ସଂଖ୍ୟା ହୋଇଗଲା ଷାଠିଏ ହଜାର ।

ଫେବୃଆରୀ ୨୭ ତାରିଖ ଦିନ ଶେଷରେ ବିପ୍ଳବୀ ମଜଦୁରର ବିଜୟରେ ଜାର୍‌ତନ୍ତ୍ର ଆତଙ୍କରେ ଅସ୍ତବ୍ୟସ୍ତ ହୋଇ ବିପ୍ଳବକୁ ନିର୍ମୂଳ କରିବାପାଇଁ ଆୟୋଜନ କଲାବେଳେ ବିପ୍ଳବୀ ମଜଦୁର ପେଟ୍ରୋଗ୍ରାଡ଼ ସହରକୁ ବିପ୍ଳବର ଆୟୋଜନ ଲାଗି ମୁହୂର୍ତ୍ତେ ମାତ୍ର ବିଶ୍ରାମ ଦେଲେ ନାହିଁ । ସେହି ରାତିରେ ପ୍ରତ୍ୟେକ କାରଖାନାରେ ସଭା । ମଜଦୁର ନେତାମାନେ ତାହାପରଦିନବେଳର କାର୍ଯ୍ୟାଦି ସ୍ଥିର କରିବା ଲାଗି ଉତ୍ସାହ ବଢାଉଥାନ୍ତି । ମଜଦୁରମାନେ ପୁଣିଥରେ ଉତ୍ତେଜିତ ହୋଇ ପ୍ରାଣପଣ ଲାଗି ଦୃଢ଼ ସଂକଳ୍ପ ନେଉଥାନ୍ତି । ସେଦିନ ରାତିରେ ସୈନ୍ୟ ଛାଉଣୀ ଭିତରେ ମଧ୍ୟ ଘୋର ଅସନ୍ତୋଷର ସୃଷ୍ଟି ହୋଇଥାଏ ।

ଏହି ଆୟୋଜନରେ ବଲ୍‌ଶେଭିକ୍‌ମାନେ ସକ୍ରିୟ ଥାଆନ୍ତି । ଜେଲ କାରଖାନା, ସୈନ୍ୟ ଛାଉଣୀ, ରାସ୍ତାଘାଟ, ବଜାର, କ୍ଲବ୍ ସବୁଆଡ଼େ ବଲ୍‌ଶେଭିକ୍‌ମାନେ ଅଦମ୍ୟ ଉତ୍ସାହ ଓ ଅଦ୍ଭୁତ ପ୍ରେରଣା ନେଇ ଅବିଶ୍ରାନ୍ତ ଭାବରେ ଲାଗି ଥାଆନ୍ତି । କେବଳ ଶୋଷ ନିଦ୍ରା ବିଶ୍ରାମ ଲାଗି ପ୍ରବୃତ୍ତି ନ

Digitized by srujan ka@gmail.com

ଥାଏ । ପେଟ୍ରୋଗ୍ରାଡ୍ ବଲ୍‌ଶେଭିକ୍ କମିଟି ଗିରଫ ହୋଇ ଯାଇଥିବାରୁ ଭିବୋର୍ଗ ଜିଲ୍ଲା କମିଟି ବିପ୍ଳବ ପରିଚାଳନାର ନେତୃତ୍ୱ ନେଇଥାନ୍ତି । ସେ ଦିନ ରାତିରେ ଏହି ଭିବୋର୍ଗ ଜିଲ୍ଲା କମିଟି ସବୁ ରିପୋର୍ଟ ସଂଗ୍ରହ କରି ଶେଷରେ ନିର୍ଦ୍ଦେଶ ଦେଲେ ଯେ, କାଲିଠାରୁ ସଶସ୍ତ୍ର ବିଦ୍ରୋହର ଅଙ୍କୁର ବହେଳ ଅସ୍ତ୍ରାଗାରକୁ ଦଖଲ କରିବାକୁ ହେବ ଏବଂ ପୁଲିସକୁ ଜୋର ପୂର୍ବକ ନିରସ୍ତ୍ର କରିବାକୁ ହେବ । ସୈନ୍ୟମାନଙ୍କ ମଧ୍ୟରେ ବଲ୍‌ଶେଭିକମାନେ ଏପରି ପ୍ରଚାର କଲେ ... ସୈନିକମାନେ କହିଲେ, "ଆମକୁ ଯେତ ମରିବାକୁ ଦିଅନ୍ତୁ ; ମାତ୍ର ଆଉ ନିଜ ଲୋକଙ୍କ ଉପରେ ଗୁଳି ଚଳାଇବୁ ନାହିଁ ।"

ବିପ୍ଳବ ବିଜୟର ଯଥେଷ୍ଟ ସଙ୍କେତ । ସ୍ୱୟଂ ସୈନ୍ୟାଧ୍ୟକ୍ଷମାନେ ଅସି ସୈନ୍ୟମାନଙ୍କୁ ଗୁଳି କରିବାକୁ ହୁକୁମ ଦେଲେ । ଗୋଟିଏ ପରେ ଗୋଟିଏ ସୈନ୍ୟବାହିନୀ ଆଦେଶ ଅମାନ୍ୟ କଲେ । ଯେ କୌଣସି ଅଫିସର ସୈନ୍ୟମାନଙ୍କୁ .. ଆଦେଶ ଦେଇ, ସେ ବନ୍ଧୁକ ସୈନ୍ୟର ବୁକରେ ମରି ଶୋଇଲା । ଦଳକୁ ଦଳ ସୈନ୍ୟ ଛାଉଣି ଛାଡ଼ି ମଜଦୁର-ଜନସମୁଦ୍ରରେ ମିଶିଗଲେ । କେତେକ ରେଜିମେଣ୍ଟ୍ ଅନ୍ୟ ଛାଉଣିକୁ ଯାଇ ସେମାନଙ୍କୁ ମଧ୍ୟ ବିପ୍ଳବରେ ଯୋଗ ଦେବାକୁ ଅନୁରୋଧ କଲେ ।

ମଜଦୁର ଶ୍ରେଣୀ ପ୍ରକୃତରେ ନେତା ସାଜିଲା । ତା'ର ଆନ୍ଦୋଳନ, ତା'ର ସଙ୍ଗଠନ, ତା'ର ନିବେଦନରେ ସୈନ୍ୟବାହିନୀ ମଜଦୁର ଶ୍ରେଣୀ ସଙ୍ଗେ ଯୋଗ ଦେଲେ । ଗିରଫ ହେବା ପୂର୍ବରୁ ପେଟ୍ରୋଗ୍ରାଡ୍ ବଲ୍‌ଶେଭିକ୍ କମିଟି ଯେଉଁ ପ୍ରସ୍ତାବ ପାଶ କରିଥିଲା, ତାହା ବାସ୍ତବ କାର୍ଯ୍ୟରେ ପରିଣତ ହେଲା । ପ୍ରସ୍ତାବରେ ଥିଲା, "ଆମେ ଆଉ ମୁହୂର୍ତ୍ତେ ମୂକ ହୋଇ ରହି ପାରିବୁ ନାହିଁ । ମଜଦୁର ଓ କୃଷୀ ହାତକୁ ହାତ ମିଳେଇ ଜାରତନ୍ତ୍ର ବିରୁଦ୍ଧରେ ଲଢ଼ିବେ । ତାହାର ଫଳରେ, ଋଷରେ ଯେଉଁ ଅତ୍ୟାଚାର ଚାଲିଛି, ତାହା ଚିରଦିନ ପାଇଁ ସମାଧି ଲଭିବ ! ... ପ୍ରତ୍ୟକ୍ଷ ସଂଗ୍ରାମର ବେଳ ଆସି ପହଞ୍ଚିଛି ।"

Digitized by srujan ka@gmail.com

ସେହିଦିନ ସାନ୍ଧ୍ୟ ସମୟରେ ସହର ଭର୍ତ୍ତି ହୋଇଗଲା । ବିଦ୍ରୋହୀ ସୈନ୍ୟ ଓ ପୁଲିସଙ୍କୁ ନିରସ୍ତ୍ର କରାଗଲା । ଜେଲଖାନାଗୁଡ଼ିକୁ ଭାଙ୍ଗି ବନ୍ଦୀମାନଙ୍କୁ ଛାଡ଼ି ଦିଆଗଲା । ଥାନାଘର ପୋଡ଼ି ଜାଳି ପାଉଁଶ କରି ଦିଆଗଲା । ସହସ୍ର ସହସ୍ର ବିପ୍ଳବୀ ଜେଲମୁକ୍ତ ହୋଇ ବିପ୍ଳବର ନେତୃତ୍ୱ ନେଲେ ! ପ୍ରତ୍ୟେକ ଲୋକ ହାତରେ ବିପ୍ଳବର ଲାଲ ଝଣ୍ଡା ପ୍ରତ୍ୟେକ ଲୋକ ହାତରେ ବଲ୍‌ଶେଭିକର ପ୍ରଚୁର ପତ୍ର । ପ୍ରତ୍ୟେକ ଲୋକର ମୁହଁରେ ବିପ୍ଳବର ଗଗନ-ଭେଦୀ ରଣଧ୍ୱନି । ଖାଲି ପେଟ୍ରୋଗ୍ରାଡ଼ ନୁହେଁ, ମସ୍କୋ, କ୍ରିମିଆ, ସାଇବେରିଆ—ସାରା ଋଷରେ । ପେଟ୍ରୋଗ୍ରାଡ୍ ସୋଭିଏଟ୍ ନେତା—ପେଟ୍ରୋଗ୍ରାଡର ମଜଦୁର ଶ୍ରେଣୀ ମୁଖ୍ୟ ସୈନ୍ୟବାହିନୀ । ବିପ୍ଳବର ନେତୃତ୍ୱ ମଜଦୁର ଶ୍ରେଣୀ ହାତରେ—ବିପ୍ଳବର ପରିଚାଳନା ବଲ୍‌ଶେଭିକ୍‌ପାର୍ଟି ହାତରେ ।

ମନ୍ତ୍ରୀମାନଙ୍କର ମୁଣ୍ଡ ଘୁରେଇଗଲା । ଚାରିଆଡ଼ୁ ଖବର ଆସିଲା—ସୈନ୍ୟମାନେ ବିଦ୍ରୋହ କରୁଛନ୍ତି । ମନ୍ତ୍ରୀମାନେ ଥରହର ହୋଇ ଉଠିଲେ । ତଥାପି ବିଦ୍ରୋହକୁ କିପରି ଦମନ କରାଯିବ ତା'ର ଉପାୟ ଚିନ୍ତା କରୁଥାନ୍ତି ଏବଂ ଅନ୍ୟ ପାଖେ ଜାର ନିକୋଲସଙ୍କୁ କିଛି ନା କିଛି କରିବାକୁ ଲେଖିଥାଆନ୍ତି । ମାତ୍ର ହଠାତ୍ ଏକ କାଗଜ ପହଞ୍ଚିଲା । ସେଥିରେ ଥିବା ଜାରଙ୍କ ଆଦେଶ ଅନୁସାରେ ଡୁମାକୁ ଭାଙ୍ଗି ଦିଆଗଲା । ମନ୍ତ୍ରୀମାନଙ୍କର ଓ ଡୁମା ସଭ୍ୟମାନଙ୍କର ଏକ ସଭା ବସିଲା । ଏହିବେଳେ ରଡ଼ଜିଆନଙ୍କ କ୍ୟାପ୍ଟେନ କହିଲା, "ମୋର ସବୁ ଆଶା ଅନ୍ତ ।" ସଙ୍ଗେ ସଙ୍ଗେ ଦେଖାଗଲା—ପ୍ରାସାଦ ଚାରିପାଖେ ଉତ୍ତେଜିତ ଜନତା । ଡୁମା ଘର ଫାଟକରେ ବିପ୍ଳବ ଧକ୍କା ମାରୁଛି । ରାଜଧାନୀରେ ଶାନ୍ତି ଆଣିବା ପାଇଁ ନେକ୍ରାସୋଭ, ଚେଖିଡେ ଓ କେରେନସ୍କିଙ୍କୁ ନେଇ ୧୦ ଜଣ ସଭ୍ୟଙ୍କର ଏକ କମିଟି ଗଢ଼ାଗଲା ।

ଶେଷରେ ବୁର୍ଜୁଆ ଦଳମାନେ ନିକୋଲସଙ୍କ ଜାଗାରେ ମାଇକେଲଙ୍କୁ ବସାଇବାଲାଗି ଉଦ୍ୟମ କଲେ । ମାତ୍ର ଜନବିଦ୍ରୋହର ଜୁଆର ଆଗରେ ଏ ପ୍ରସ୍ତାବ ଟିକି ପାରିଲା ନାହିଁ । ଜାର ନିକୋଲସ୍ ମାର୍ଚ୍ଚ

Digitized by srujan ka@gmail.com

ଅନ୍ତରେ ନିଜର ମୃତ୍ୟୁ ଇସ୍ତାହାର ସ୍ୱାକ୍ଷର କଲେ । ବଂଶର ପରମ୍ପରା, ନିଜର ଗର୍ବ, ଦମ୍ଭ, ଅଭିମାନ; ପୃଥିବୀର ସବୁ ସୁଖ କଳ୍ପନାକୁ ସେ ଜୀବନ ଗାରଦରେ କବର ଦେବାକୁ ବାଧ୍ୟ ହେଲେ । ସେ ରାଜସିଂହାସନ ପରିତ୍ୟାଗ କଲେ ବୋଲି ଘୋଷଣାପତ୍ର ସ୍ୱାକ୍ଷର କଲେ ।

ତା'ପରେ ନିକୋଲାସଙ୍କର ସ୍ୱେଚ୍ଛା ଶାସନ ଶେଷ ହେଲା । ଚିରଦିନଲାଗି ରୋମାନୋଭ୍ ରାଜବଂଶ ଲୋପ ପାଇଲା । ପୃଥିବୀର ଏକ ବିରାଟ ସାମ୍ରାଜ୍ୟର ସମ୍ରାଟଙ୍କ ରାଜମୁକୁଟ ମାଟିରେ ଲୋଟିଗଲା । ଲକ୍ଷ ଲକ୍ଷ କୃଷକ ମଜଦୁର ସେହି ମୁକୁଟ ଉପରେ ବିଜୟର ନୃତ୍ୟ ରଚନା କଲେ ।

ଯେତେବେଳେ ବିପ୍ଳବର ପରିଚାଳନା ଓ ଶତ୍ରୁ ସଙ୍ଗେ ସମ୍ମୁଖ ସଶସ୍ତ୍ର ସମରରେ ବୋଲ୍ସେଭିକମାନେ ବ୍ୟାପୃତ ଥାଆନ୍ତି, ଠିକ୍ ସେତିକିବେଳେ ବିଭିନ୍ନ ସ୍ଥାନମାନଙ୍କରେ ଶ୍ରମିକ, ସୈନ୍ୟ ଓ କୃଷକମାନଙ୍କର ପ୍ରତିନିଧି ବନ୍ଦହୋଇ ଯେଉଁ ସୋଭିଏଟ୍‌ମାନ ଗଢ଼ା ଯାଉଥିଲା, ସେଗୁଡ଼ିକୁ କୌଶଳ କରି ମେନ୍‌ସେଭିକ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରୀମାନେ ଦଖଲ କରି ଯାଉଥିଲେ ।

ଏହାର ଫଳରେ ପେଟ୍ରୋଗ୍ରାଡ୍ ଓ ମସ୍କୋ ସୋଭିଏଟ୍‌ମାନଙ୍କରେ ମେନସେଭିକ୍ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରୀମାନେ ସଂଖ୍ୟାଧିକ ହେଲେ । ଦୁଇଟିଯାକ ରାଜଧାନୀରେ ଏବଂ ଅନ୍ୟାନ୍ୟ ବଡ଼ ଜିଲ୍ଲାଗୁଡ଼ିକରେ ବୋଲ୍‌ସେଭିକମାନେ ସଂଖ୍ୟାନ୍ୟୂନ ରହିଲେ । ଆରମ୍ଭରୁ ଇଭାନୋଭୋ-ଭୋଜ୍‌ନେସେନ୍‌ସ୍କ, ଶ୍ଲିସେଲବୁର୍ଗ ପ୍ରଭୃତି କେତେକ ଜାଗାରେ ବୋଲ୍‌ସେଭିକମାନେ ସଂଖ୍ୟାଗରିଷ୍ଠ ଥିଲେ ।

Digitized by srujan ka@gmail.com

# ଫେବ୍ରୁଆରୀ ବିପ୍ଳବର ରୂପ କଅଣ ?

ଫେବ୍ରୁଆରୀ ବିପ୍ଳବ ଜୟଯୁକ୍ତ ହେଲା, ଏ କଥା ସାରା ଦୁନିଆ ଜାଣିଲେ; ସାରା ଋଷ ଜନତା ଜାଣିଲା । ମେନ୍‌ସେଭିକ୍ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରିମାନେ ସୋଭିଏଟମାନଙ୍କରେ ନିମ୍ନମଧ୍ୟବିତ୍ତ ଗୃହୀ ମଜଦୁରଙ୍କ ହେତୁ ଯୋଗାଡ଼ କରି ସରକାରରେ ଯୋଗଦେଇ ବିପ୍ଳବର ବିଜୟ ହୋଇଛି ବୋଲି ଡିଣ୍ଡିମ ପିଟିଲେ ।

ମାତ୍ର ଗୋଟିଏ ଦଳ ଏ କଥା ସ୍ୱୀକାର କଲା ନାହିଁ । ବଲସେଭିକ ଦଳର ନିର୍ବାସିତ ନେତା ଦୂର ସୁଇଜରଲାଣ୍ଡରୁ ଋଷ ମଜଦୁରଙ୍କୁ ଅଭିନନ୍ଦନ ଜଣାଇ ଲେଖିଲେ, "ମଜଦୁର ଭାଇମାନେ, ତୁମେମାନେ ସର୍ବହରା ବୀରତ୍ୱର ପରାକାଷ୍ଠା ଦେଖାଇଛ । ଜାରତନ୍ତ୍ର ବିରୁଦ୍ଧରେ ସଂଘଟିତ ଅନ୍ତର୍ବିପ୍ଳବ ମଧ୍ୟରେ ସେହି ବୀରତ୍ୱ ପ୍ରକାଶ ପାଇଛି । ତୁମମାନଙ୍କୁ ବର୍ତ୍ତମାନ ସାରା ଜନତା ଓ ସର୍ବହରା ଶ୍ରେଣୀର ସଂଗଠନର ପରାକାଷ୍ଠା ଦେଖାଇବାକୁ ହେବ । ତାହାର ଫଳରେ ବିପ୍ଳବର ଦ୍ୱିତୀୟ ଅଧ୍ୟାୟରେ ତୁମ ଲାଗି ବିଜୟର ବାଟ ପରିଷ୍କାର ହୋଇଯିବ ।"

Digitized by srujan ka@gmail.com

ଆଶ୍ଚର୍ଯ୍ୟ ଲାଗେ, ବିପ୍ଳବ ମେନସେଭିକେ ଅନୁମୁକ୍ତ ହେଲ ବୋଲି ଗ୍ରହଣୀୟ ହୁଏ ଅଟଇ, ଠିକ୍ ମେଞ୍ଚେଭିକେ ଗୋଟିଏ ଦଳ ସେ ନିଜର ଶ୍ରମିକଶ୍ରେଣୀ ଦଳର ବିପ୍ଳବର ବିରୋଧିତା କରିଛି, ସେହି ଦଳ ଏ ଆବାଜ ଉଠାଉଛି । ଗୁଣ୍ଡା ସ୍ୱଭାବ, ଏ କଣ ବାସ୍ତବତା ?

ନା, ବାସ୍ତବ ବଲସେଭିକ ଦଳ ହୁଏନ୍ତି; ବାସ୍ତବ ହେଲେ ମେନସେଭିକ, ସୋସିଆଲିଷ୍ଟ ରିଭଲ୍ୟୁସନାରି, କ୍ୟାଡେଟ ପ୍ରଭୃତି । ଆଠ ମାସ ପରେର ଇତିହାସ ଏହା ପ୍ରମାଣ କରେ ।

୧୯୦୫ର ବିପ୍ଳବ ଆଉ ୧୯୧୭ର ଫେବୃଆରୀ ବିପ୍ଳବ ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ । ୧୯୦୫ ବିପ୍ଳବ ସଫଳ ହେଲା ନାହିଁ । କିନ୍ତୁ ୧୯୧୭ ଫେବୃଆରୀ ଲାଗି ୧୯୦୫ ବିପ୍ଳବ ଦେଇଗଲା ବହୁତ ଶିକ୍ଷା । ଦୁଇଟିଯାକ ବିପ୍ଳବରେ ଦେଖାଗଲା, ମଜଦୁର ଶ୍ରେଣୀହିଁ ବିପ୍ଳବରେ ମୁଖ୍ୟ ଭାଗ ନେଲେ । ନିଜ ପକ୍ଷରେ ସୈନ୍ୟବାହିନୀକୁ ନେଲେ, ଚାଷୀଶ୍ରେଣୀକୁ ନେଲେ, ଧର୍ମଘଟ କଲେ, ଶୋଭାଯାତ୍ରା କଲେ, ରାସ୍ତା ଘାଟରେ ବ୍ୟାରିକେଡ୍ ତିଆରି କଲେ, ସଶସ୍ତ୍ର ଯୁଦ୍ଧ କଲେ, ଗୁଳି ଖାଇଲେ, ଗୁଳି ମାରିଲେ, ରକ୍ତ ଦେଲେ । ତଥାପି କାହିଁକି ଏହାକୁ ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ କୁହାଯିବ ? ତଥାପି କାହିଁକି ଲେନିନ୍ ବିପ୍ଳବର ଦ୍ୱିତୀୟ ଅଧ୍ୟାୟ ଲାଗି ଡାକରା ଦେଲେ ?

ଏକଥା ସତ୍ୟ—ଦୁଇଟିଯାକ ବିପ୍ଳବରେ ଲକ୍ଷ ଲକ୍ଷ ମଜଦୁର ଭାଗ ନେଇଥିଲେ । ଲକ୍ଷ ଲକ୍ଷ ଚାଷୀ ବିଦ୍ରୋହ କରିଥିଲେ । ଲକ୍ଷ ଲକ୍ଷ ଚାଷୀ ମଜୁରିଆର ପୁଅମାନେ ସୈନ୍ୟବାହିନୀରେ ବହୁ ସଂଖ୍ୟାରେ ବିଦ୍ରୋହ କରି ବିପ୍ଳବରେ ଯୋଗ ଦେଇଥିଲେ । କିନ୍ତୁ ଏ ଅଭିଯାନରେ ଶ୍ରମିକ ଶ୍ରେଣୀ ସଙ୍ଗେ ଅଳ୍ପବହୁତ ବୁର୍ଜୁଆ ମୁକ୍ତିପନ୍ଥୀଦଳ ମଧ୍ୟ ଥିଲେ ।

ମଜଦୁର ଶ୍ରେଣୀ ଚାହୁଁଥିଲା—ସର୍ବହରାର ଏକନାୟକତ୍ୱ—ଯେଉଁଠି ପୁଞ୍ଜିପତି ରହିବେନାହିଁ—କଳକାରଖାନା, ବ୍ୟାଙ୍କ, ଖଣି ପ୍ରଭୃତି ଜାତିର-

Digitized by srujan ka@gmail.com

ସମାପ୍ତି ହେବ—ଅତ୍ୟାଚାର ଓ ଶୋଷଣର ଚିରଦିନ ଲାଗି ଶେଷ ହୋଇଯିବ। ଚାଷୀ ଚାହୁଁଥିଲା—ଜମିଦାରମାନଙ୍କୁ ଉଚ୍ଛେଦ କରାଯିବ—ଭୂମିହୀନ ଓ ଅଳ୍ପଭୂମିଥିବା ଚାଷୀଙ୍କ ଭିତରେ ଜମିବଣ୍ଟନ ହେବ।

ଚାଷୀ ମଜଦୁର ଉଭୟେ ଚାହୁଁଥିଲେ—ଏକ ନୂଆ ରୁଷ—ଯେଉଁ ରୁଷର ଶାସକ ହେବେ ଚାଷୀମଜଦୁର—ଯେଉଁ ରୁଷର ମାଲିକ ହେବେ ଚାଷୀମଜଦୁର—ଯେଉଁ ରୁଷରେ ପ୍ରତ୍ୟେକ ନିଜର ସରକାର ଗଠ ପଟେଇବ—ଯେଉଁ ରୁଷରେ ପ୍ରତ୍ୟେକ ଲୋକଙ୍କୁ ସରକାର କାମଦେବ—ଯେଉଁ ରୁଷରେ ଶିକ୍ଷା, ରଞ୍ଜନ, ସ୍ୱାସ୍ଥ୍ୟ, କଳା କାହାର ଏକଚାଟିଆ ଅଧିକାର ନାହିଁ—ପ୍ରତ୍ୟେକ ଲୋକ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଉନ୍ନତ ଶିକ୍ଷା ଓ ବୃତ୍ତି ସମ୍ପନ୍ନ ନାଗରିକ ହୋଇ ଏକ ଶୋଷଣହୀନ ସାମ୍ୟବାଦୀ ସମାଜ ଗଢ଼ିବାଲାଗି ଯାବତୀୟ ସୁଯୋଗ ପାଇବ—ଯେଉଁ ସମାଜ ମଣିଷ ଦୁନିଆରୁ ଯୁଦ୍ଧ ଲୋପ କରିବ, ଜାତିଭେଦ ଲୋପ କରିବ, ହିଂସାଦ୍ୱେଷ ବାଦବିବାଦ ଲୋପ କରିବ—ମଣିଷ ଉପରେ ମଣିଷର ଅତ୍ୟାଚାର ଲୋପ କରିବ—ମଣିଷ ହେବ ଚିରଦିନ ଲାଗି ମୁକ୍ତ, ଚିରଦିନ ଲାଗି ସ୍ୱାଧୀନ ଓ ସୁଖୀ। ଶେଷରେ ଦୁନିଆ ହେବ ଏକ ପରିବାର।

ସେଥିଲାଗି ଲଢ଼ିବାକୁ ହେବ। ସଶସ୍ତ୍ର ଲଢ଼େଇ କରି ଜାର୍ ପୁଞ୍ଜିପତି ଶ୍ରେଣୀକୁ ଲୋପ କରିବାକୁ ହେବ। ବିପ୍ଳବର ଏହି ବୈଜ୍ଞାନିକ ଉପାୟ, ଏହି ଏକମାତ୍ର ଉପାୟକୁ ରୁଷର ଚାଷୀ ମଜଦୁର ଧରିଥିଲେ। ସୁବିଧାବାଦୀ ପନ୍ଥାକୁ ବରାବର ପରିତ୍ୟାଗ କରିଥିଲେ।

ତଥାପି ଏହି ବିପ୍ଳବ ହେଲା—ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ। ବିପ୍ଳବରେ ମୁଖ୍ୟ ଭାଗ ନେଲା ଶ୍ରମିକଶ୍ରେଣୀ, ମାତ୍ର କ୍ଷମତା ପଡ଼ିଲା ବୁର୍ଜୁଆ ପୁଞ୍ଜିପତି ଶ୍ରେଣୀ ତଥା ନିଜକୁ ଶ୍ରମିକବନ୍ଧୁ ବୋଲାଇ କାର୍ଯ୍ୟରେ ପୁଞ୍ଜିପତି ଶ୍ରେଣୀଙ୍କୁ ସାହାଯ୍ୟ କରୁଥିବା ମେନସେଭିକ୍ ଓ ସୋସିଆଲିଷ୍ଟ ରେଭଲ୍ୟୁସନାରୀମାନଙ୍କ ହାତରେ।

Digitized by srujan ka@gmail.com

ତାହାର କାରଣ ସ୍ପଷ୍ଟ । ଲେନିନ୍ ତାହାର ବ୍ୟାଖ୍ୟା କଲେ— ବଲ୍‌ଶେଭିକ୍‌ମାନେ ତାର ବ୍ୟାଖ୍ୟା କଲେ । ରୁଷ ଜାରତନ୍ତ୍ରର ମନମୁଖୀ ଶାସନ ଲୋପ କରିବାକୁ ରୁଷର ମଜଦୁର, ରୁଷ କୃଷି, ରୁଷ ପୁଞ୍ଜିପତିଶ୍ରେଣୀ ଏପରିକି ବିଲାତର ପୁଞ୍ଜିପତି ଶ୍ରେଣୀ ମଧ୍ୟ ଚାହୁଁଥିଲେ । ଅବଶ୍ୟ କୃଷିମଜଦୁର ନିଜ ସ୍ୱାର୍ଥ ଦୃଷ୍ଟିରୁ ଜାରଶାସନର ଲୋପ ଚାହୁଁଥିଲେ; ଅଥଚ ପୂର୍ବୋକ୍ତ ପୁଞ୍ଜିପତିମାନେ ଜାରଶାସନର ଲୋପ ଚାହୁଁଥିଲେ ସେମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ । ପୁଞ୍ଜିପତିମାନେ ଚାହୁଁଥିଲେ ଜାର ନିକୋଲାସଙ୍କ ବଦଳରେ ମାଇକେଲ୍‌ଙ୍କୁ ଗାଦିନସିନ୍ କରେଇବେ । ତାହାକୁ ନିଜ ଅଧିକାରରେ ରଖି ରାଷ୍ଟ୍ରଯନ୍ତ୍ରକୁ ନିଜ ଶ୍ରେଣୀର ଅର୍ଥାତ୍ ଶୋଷକ ଶ୍ରେଣୀର ସ୍ୱାର୍ଥରକ୍ଷୀ ଶକ୍ତିରୂପେ ସଂଗଠିତ କରିବେ ଏବଂ ଶ୍ରମିକ ଓ କୃଷକ ଶ୍ରେଣୀର ଉନ୍ମୁଖ ବିପ୍ଳବକୁ ଚିର ସମାଧି ଦେବେ । ତେଣୁ କୃଷି ମଜଦୁର, ସୈନ୍ୟଙ୍କ ସଙ୍ଗେ ବୁର୍ଜୁଆମାନେ, ପୁଞ୍ଜିପତିଶ୍ରେଣୀର ଦଳମାନେ ମଧ୍ୟ ଯୋଗ ଦେଲେ । ସେମାନେ ରକ୍ତ ଦେଇନାହାନ୍ତି ସତ, ସେମାନେ ସଶସ୍ତ୍ର ସଂଗ୍ରାମ କରିନାହାନ୍ତି ସତ ମାତ୍ର ସେମାନଙ୍କର ବହୁଦିନର ଅଭିଜ୍ଞତା ଓ ରାଜନୀତିକ କୌଶଳ ଗୁଣ ଯୋଗେ କ୍ଷମତା ସେହିମାନଙ୍କ ହାତ[illegible] ପ୍ରଥମେ ଗଲା ।

ଲେନିନ୍ କହୁଥିଲେ ଯେ, ଯଦିଓ ମଜଦୁରଶ୍ରେଣୀ ଅସୀମ ସାହସ ଦେଖାଇଛି, ତଥାପି ତାକୁ ସଙ୍ଗଠନ ଜଣା ନଥିଲା । ତେଣୁ ସ୍ୱାଭାବିକରେ ଢକାଢଙ୍କା ହେଉ ଯାଇ ବୁର୍ଜୁଆଶ୍ରେଣୀ କ୍ଷମତା ହାସଲ କଲା ।

ବିପ୍ଳବ ସମ୍ବନ୍ଧରେ ମାର୍କ୍ସବାଦର ତଥ୍ୟ: ସର୍ବହରା ଶ୍ରେଣୀର ସାମ୍ୟବାଦ ଲାଗି ବିପ୍ଳବ ଦୁଇଟି ସ୍ତର ଦେଇ ଗତି କରିବ । ପ୍ରଥମ ସ୍ତରରେ କ୍ଷମତା ବୁର୍ଜୁଆଶ୍ରେଣୀ ହାତକୁ ଚାଲିଯିବ । ତା ପରେ ବିପ୍ଳବର ଦ୍ୱିତୀୟ ସ୍ତର ବା ଦ୍ୱିତୀୟ ଅଧ୍ୟାୟ ଆରମ୍ଭ ହେବ । ସେହି ସ୍ତରରେ ପ୍ରକୃତ କ୍ଷମତା ସର୍ବହରାଶ୍ରେଣୀ ହାତକୁ ଆସିବ । ଏହି ଦୁଇଟି ସ୍ତରର ମଧ୍ୟବର୍ତ୍ତୀ କାଳ କମ ହେବ କି ବେଶୀ ହେବ ତା ନିର୍ଭର କରେ ସର୍ବହରାଶ୍ରେଣୀର

Digitized by srujan ka@gmail.com

ସଂଗଠନ, ରଣକୌଶଳ, ରାଜନୀତି ଓ ତା ନିଜ ଦଳର ରାଜନୀତିକ ନେତୃତ୍ୱ ଉପରେ । ସଂଗଠନ ଯଦି ଦୁର୍ବଳ, ରଣକୌଶଳ ଯଦି ଅଜଣା, ରାଜନୀତି ଯଦି ଅଜଣା ବା ନିଜ ଦଳର ରାଜନୀତିକ ନେତୃତ୍ୱ ଦେବାର ଯଦି ପାରଗତାର ଅଭାବ ତେବେ ବିପ୍ଳବର ଦିନ ଗଡ଼ି ଚାଲିଯିବ ।

ଏହି ଭବିଷ୍ୟତ୍ ବାଣୀର ପ୍ରମାଣ ଦେଲେ ରୁଷର ବଲ୍‌ସେଭିକ୍ ଦଳ ଓ ତାର ନେତା ଲେନିନ୍ । ବୈଜ୍ଞାନିକ ତଥ୍ୟ ଐତିହାସିକ ସତ୍ୟରେ ପରିଣତ ହେଲା ।

ତୃତୀୟ ଗଣତାନ୍ତ୍ରିକ ବିପ୍ଳବ ସର୍ବଶେଷରେ ଜୟଯୁକ୍ତ ହେଲା । ବିପ୍ଳବୀ ମଜଦୁରଶ୍ରେଣୀ ଶତ ସଂଗ୍ରାମ ସତ୍ତ୍ୱେ ନିଜର ରାଜନୀତିକ ଜ୍ଞାନ ଅଭାବରୁ ଅସ୍ଥାୟୀ ସରକାର ଉପରେ ଅହେତୁକ ବିଶ୍ୱାସ ସ୍ଥାପନ କଲେ । ବିଶ୍ୱାସ କଲେ ଯେ, ମେନସେଭିକ୍ ଓ ସୋସିଅଲିଷ୍ଟ ରିଭୋଲ୍ୟୁସନାରିମାନେ ସେମାନଙ୍କ ଲାଗି ଆଣିଦେବେ ଶାନ୍ତି, ମୁକ୍ତି, ରୋଟି, ଜମି । ଏହି ବିଶ୍ୱାସ ରଖି ମଜଦୁରଶ୍ରେଣୀ, ବିଦ୍ରୋହୀ ସୈନ୍ୟବାହିନୀ, ଗାଁ ଗହଳର ମଳମୁଣ୍ଡିଆ ଚାଷୀ ଉଲ୍ଲସିତ ହେଲେ ।

Digitized by srujan ka@gmail.com

## ଅକ୍ଟୋବର ବିପ୍ଳବର ଆୟୋଜନ—
## ଲେନିନଙ୍କ ଏପ୍ରିଲ ପ୍ରବନ୍ଧ

ଶତାବ୍ଦୀର ପ୍ରଥମ ଉଦ୍‌ବୋଧନରେ ଋଷ ଏକ ମୁକ୍ତ ସ୍ୱାଧୀନ ରାଷ୍ଟ୍ର ଭାବେ ଜାଗିଗଲା । ଅଲ୍‌ଟାଇ ପର୍ବତମାଳାର ତୁଙ୍ଗ ଶିଖର ଦେଶରେ ଯେଉଁ ବିପ୍ଳବୀମାନେ ନିର୍ବାସିତ ହୋଇଥିଲେ, ଉତ୍ତରମେରୁର ହିମ-ରାଜ୍ୟରେ ଯେଉଁ ବିପ୍ଳବୀ ମୁକ୍ତିର ସ୍ୱପ୍ନରେ ଉଦ୍‌ବୁଦ୍ଧ ହେଉଥିଲେ ସେମାନେ ସମସ୍ତେ ମୁକ୍ତ ହୋଇ ନିଜ ଦେଶ, ନିଜ ପ୍ରଦେଶ, ନିଜ ଘରଦ୍ୱାର, ଗାଁ ଗଣ୍ଡାଳକୁ ଫେରି ଆସିଲେ । ଯେଉଁ ଋଷରେ ୧୮୨୫ ଠାରୁ ୧୮୮୫ ଭିତରେ ସାତ ଲକ୍ଷ ତେୟାଳିଶ ହଜାର ରାଜବନ୍ଦୀ ନିର୍ବାସିତ ହୋଇଥିଲେ ସେହି ଋଷରେ ଯେ ୧୯୦୫ ଠାରୁ ୧୯୧୭ ପର୍ଯ୍ୟନ୍ତ କେତେ ଲକ୍ଷ ରାଜବନ୍ଦୀ ନିର୍ବାସିତ ହୋଇ-ଥିବେ ତାର ଇୟତ୍ତା ନାହିଁ । ସେମାନେ ଋଷର ମୁକ୍ତ ଆକାଶ ତଳେ **ଥରେ ନିଜର ଗୌରବମୟ ଅତୀତ ଓ ସମ୍ଭାବନାପୂର୍ଣ୍ଣ ଭବିଷ୍ୟତ କଥା ଭାବି ଆନନ୍ଦରେ ଉନ୍ମତ୍ତ ହେଲେ ।**

Digitized by srujan ka@gmail.com

ଋଷରେ ଗୋଟିଏ ନବ କୁଟିଳ—ଦୁଇଟି ଶକ୍ତି ଶାସନ କଲେ! ରାଷ୍ଟ୍ରକ୍ଷମତା ନାମକୁ ରହିଲା ବୁର୍ଜୁଆ ଶ୍ରେଣୀ ହାତରେ। ମାତ୍ର ଅସଲ କ୍ଷମତା-ସମ୍ପନ୍ନ ଅନୁଷ୍ଠାନ ଥିଲା ମଜଦୁର ଓ ସୈନ୍ୟବାହିନୀର ସୋଭିଏଟ୍।

ଜାର୍ ବାଦ ଦେବା ପୂର୍ବରୁ ବିପ୍ଳବର ଆୟୋଜନ ଲାଗି ଯେଉଁ ଆହ୍ୱାନ ଏହି ସୋଭିଏଟ୍ ଦେଇଥିଲା ସେଥିରୁ ଜଣାଯାଏ, ସେହି ସୋଭିଏଟ୍ ହିଁ ଥିଲା ପ୍ରକୃତ ଦେଶର ଶାସନକର୍ତ୍ତା! ପ୍ରଥମ ଯେଉଁ ଅସ୍ଥାୟୀ କମିଟି ଓ ପ୍ରତିନିଧିଦଳ ଗଢ଼ା ଯାଇଥିଲା ସେମାନେ ଏହି ସୋଭିଏଟ୍ର ପ୍ରତିନିଧିଙ୍କ ସଙ୍ଗେ ମାର୍ଚ୍ଚ ପନ୍ଦରରେ କଥାବାର୍ତ୍ତା କରିବା ପରେ ଅସ୍ଥାୟୀ ସରକାର ଗଢ଼ିଥିଲେ। ମାତ୍ର ବଲସେଭିକ୍ ନେତାମାନେ ସହସ୍ର ସହସ୍ର ସଂଖ୍ୟାରେ ଜେଲ ବା ନିର୍ବାସନରେ ଥିବାରୁ ସୋଭିଏଟ୍ର ପ୍ରତିନିଧିମାନେ ବିପ୍ଳବ ପ୍ରତି ବିଶ୍ୱାସଘାତକତା କଲେ।

ଫଳରେ ଶାସନ କ୍ଷମତା ସୋଭିଏଟ୍ ହାତକୁ ନ ଆସି ବୁର୍ଜୁଆ ଦଳମାନଙ୍କ ହାତକୁ ଗଲା। ମାତ୍ର ସୋଭିଏଟ୍‌ଗୁଡ଼ିକ ମଧ୍ୟ ନିଜର ଶକ୍ତି ଓ ପ୍ରଭାବ ବଳରେ କ୍ଷମତା ବଜାୟ ରଖିବା ଚେଷ୍ଟାରେ ରହିଲେ।

ବୁର୍ଜୁଆ ରାଷ୍ଟ୍ର ଏବଂ ମେନସେଭିକ, ସୋସିଆଲିଷ୍ଟ ରିଭଲ୍ୟୁସନାରି-ମାନେ ସୋଭିଏଟ୍ର ଏହି କ୍ଷମତାକୁ ଖର୍ବ କରି ବୁର୍ଜୁଆଙ୍କ ରାଷ୍ଟ୍ରଶାସନରେ ଅଖଣ୍ଡ କ୍ଷମତା ପ୍ରତିଷ୍ଠା କରିବାଲାଗି ପ୍ରାଣାନ୍ତକ ଉଦ୍ୟମ କଲେ। ଫଳରେ ସଂଘର୍ଷ ଆରମ୍ଭ ହେବାରେ ଲାଗିଲା। ଲେନିନ୍ ଏହି ଦ୍ୱିବିଧ ଶକ୍ତି ସମ୍ବନ୍ଧରେ କହୁଛନ୍ତି—

"ଆମ ବିପ୍ଳବର ଅସଲ କଥା ହେଉଛି—ଏହା ଦୁଇଟି ଶକ୍ତି ସୃଷ୍ଟି କରିଛି।······ବସ୍ତୁତଃ ଅସ୍ଥାୟୀ ସରକାର ପାଖେ ପାଖେ ବା ବୁର୍ଜୁଆ ସରକାର ପାଖେ ପାଖେ ଆଉ ଗୋଟିଏ ସରକାର ବିକାଶ ଲାଭିଛି। ଏହି ସରକାରଟି ଦୁର୍ବଳ ଓ ଭ୍ରୂଣତୁଲ୍ୟ; ମାତ୍ର ତାହା ଉପୁଜିଛି ଓ ବଢ଼ି ଚାଲିଛି··· ତାହା ହେଉଛି ମଜଦୁର ଓ ସୈନ୍ୟବାହିନୀର ସୋଭିଏଟ୍।"

Digitized by srujan ka@gmail.com

୧୯୦୫ ବିପ୍ଳବରେ ସ୍ଥାନେ ସ୍ଥାନେ ଯେଉଁ ସୋଭିଏଟ୍ ଜନ୍ମ ଲଭିଥିଲା ଏବଂ ଯାହାକୁ ଷେତ୍ରଦନ୍ତ ଲେନିନ ଓ ବଲସେଭିକମାନେ ଏତେ ଗୁରୁତ୍ୱ ଓ ମହତ୍ୱ ଦେଇଥିଲେ ଆଜି ସେହି ସୋଭିଏଟ୍ ସରକାରର ଏକ ରୂପ ନେବାକୁ ଯାଉଛି । କିନ୍ତୁ ଅବଳ ଯେତେ ଉଦ୍ୟମ କଲେ ମୁକ୍ତା ନିଜ ରକ୍ତ ଦେଇ ଯେଉଁ ସୋଭିଏଟ୍‌କୁ ମଜଦୁର କୃଷୀ ସୈନ୍ୟବାହିନୀ ଗଢ଼ିଥିଲେ ତାକୁ ଶତ୍ରୁର ପାଦତଳେ ସମର୍ପି ଦିଅନ୍ତେ କିପରି ?

ବିପ୍ଳବର ଏହି ଚର୍ଯ୍ୟାନ୍ତବେଳେ ବଲସେଭିକ୍‌ମାନେ ନିଜର ଦଳ ଅଇନସଙ୍ଗତ ହେବା ସଙ୍ଗେ ସଙ୍ଗେ ପାର୍ଟି ସଙ୍ଗଠନରେ ଲାଗିଗଲେ । ଦଳ ବହୁତ ଦିନ ବେଆଇନ ହୋଇଥିବାରୁ ଅନେକ ସମୟରେ ବହୁଳ ପାର୍ଟି ସଭ୍ୟଙ୍କର ମତାମତ ଜାଣିବା ମଧ୍ୟ ସମ୍ଭବ ହୋଇପାରୁ ନଥିଲା । ପାର୍ଟି ଅଇନ ସଙ୍ଗତ ହେବାବେଳେ ପାର୍ଟି ସଭ୍ୟଥିଲେ ଚାଳିଶ ହଜାର । ପାର୍ଟିର ଖୋଲାଖୋଲି କାର୍ଯ୍ୟକଳାପ ବେଳେ ଦେଖାଗଲା ଯେ ତେତେବେଳେ ବଣିଷ୍ଠ ସଭ୍ୟ ପଞ୍ଚ ମାସକୁ, ବିଷ୍ଣାଧିଆଜ ଗାଣ୍ଡି ଧରିଛନ୍ତି ।

ଏତେବେଳେ ପାର୍ଟିର ନେତା ଲେନିନଙ୍କର ଉପସ୍ଥିତି ଅବଶ୍ୟକ ହେଲା । ଏପ୍ରିଲ ୩ ତାରିଖ ରାତିରେ ଋଷ ବିପ୍ଳବର ନିର୍ବାସିତ ନେତା ଲେନିନ ପେଟ୍ରୋଗ୍ରାଡ ସହରରେ ପଦାର୍ପଣ କଲେ । ପେଟ୍ରୋଗ୍ରାଡ୍ ସହର ଲେନିନଙ୍କ ଫେରିବା ସମ୍ବାଦ ଶୁଣି ଆନନ୍ଦରେ ଉଚ୍ଛ୍ୱସିତ ହୋଇ ଉଠିଲା । ଫିନଲାଣ୍ଡ ଷ୍ଟେସନ ଜନତାରେ ଭରପୂର । ନାରୀ, ପୁରୁଷ, ବାଳକ, ଶ୍ରମିକ, ସୈନ୍ୟ, ନାବିକ, ରେଳ କର୍ମୀ, ପାର୍ଟି ସଭ୍ୟ ସମସ୍ତେ ହଜାର ହଜାର ସଂଖ୍ୟାରେ ଷ୍ଟେସନର ଚାରିଆଡ଼େ ଜମା ହୋଇଗଲେ । ବିପ୍ଳବର ଲାଲ୍‌ଝଣ୍ଡା ଉଡ଼ାଇ ମଜଦୁର ବସ୍ତିରୁ ଶୋଭାଯାତ୍ରା ପରେ ଶୋଭାଯାତ୍ରା ଚାଲିଥାଏ । "ସ୍ୱାଗତ ସାଥୀ ଲେନିନ" ଧ୍ୱନିରେ ଗଗନ ଉଚ୍ଛୁଳି ପଡୁଥାଏ ।

ସୋଭିଏଟ୍‌ର ନେତାମାନେ ଲେନିନଙ୍କୁ ଅଭିନନ୍ଦନ ଜଣାଇଲେ । ମେନ୍‌ସେଭିକ୍‌ମାନେ ଏହି ଅବସରରେ ବଲସେଭିକ୍‌ଦଳ ସହିତ ମିଶିଯିବାକୁ ଇଚ୍ଛୁକ ଥାଆନ୍ତି । ମାତ୍ର ଲେନିନ ପଦ୍ଧତିବା ମାନେ ଅର୍ଥାତ୍ ଏପ୍ରିଲ

Digitized by srujan ka@gmail.com

୪ ତାରିଖରେ ପ୍ରସିଦ୍ଧ "ଏପ୍ରିଲ୍ ଥିସିସ୍" ବା ଏପ୍ରିଲ ପ୍ରବନ୍ଧରେ ରୁଷ ବିପ୍ଳବର ଗତି ନିର୍ଦ୍ଦେଶ କଲେ । ଏପ୍ରିଲ ପ୍ରବନ୍ଧ ପରେ "ଅକ୍ଟୋବର ଉନ୍‌ଦସବ" ବା ଅକ୍ଟୋବର ବିପ୍ଳବ ଲାଗି ଆଦର୍ଶଗତ ଭିତ୍ତିକୁ ମଜ୍ଜିତ କରି ନୂତନ ଅଭିଯାନ ପାଇଁ କ୍ଷେତ୍ର ପ୍ରସ୍ତୁତ କଲା । ସେହି ପ୍ରବନ୍ଧ ଅନୁସାରେ ବଲସେଭିକ୍ ପାର୍ଟି ନିଜର ଗତି ଧାର୍ଯ୍ୟ କଲେ ।

ଅସ୍ଥାୟୀ ସରକାର ଏ ପର୍ଯ୍ୟନ୍ତ ମଧ୍ୟ ସାମ୍ରାଜ୍ୟବାଦୀ ଯୁଦ୍ଧକୁ ରକ୍ଷା ଜନତାର ଯୁଦ୍ଧ ବୋଲି କହି ଯୁଦ୍ଧ ଉଦ୍ୟମ କରୁଥାଏ । ଏ ସମ୍ପର୍କରେ ମେନ୍‌ସେଭିକ ଦଳ ଓ ସୋସାଲିଷ୍ଟ ରିଭୋଲ୍ୟୁସନାରିମାନେ ସମର୍ଥନ ଦେଉଥାନ୍ତି । ଶ୍ରମିକ ମହଲରେ ଯୁଦ୍ଧ ପ୍ରତି ଘୋର ଅନାସ୍ଥା ଥିଲେ ମଧ୍ୟ କେତେକାଂଶରେ ମେନ୍‌ସେଭିକ ପ୍ରଭୃତିଙ୍କ ପ୍ରଚାରର ପ୍ରଭାବ ଥାଏ । ତେଣୁ ଲେନିନ ଅଳ୍ପ ପରେ ଏହି ଏପ୍ରିଲ ପ୍ରବନ୍ଧରେ ଯୁଦ୍ଧ ସମ୍ପର୍କରେ ବଲସେଭିକ ଗତିର ବ୍ୟାଖ୍ୟା କଲେ । ସେ ସ୍ପଷ୍ଟ କହିଲେ କି, ଏ ଯୁଦ୍ଧ ପୂରାପୂରି ସାମ୍ରାଜ୍ୟବାଦୀ ଯୁଦ୍ଧ । ଉଭୟ ପକ୍ଷ ସାମ୍ରାଜ୍ୟବାଦୀ ଲକ୍ଷ୍ୟ ନେଇ ଏ ଯୁଦ୍ଧରେ ପଶିଛନ୍ତି । କୌଣସି ପକ୍ଷରେ ଶକ୍ତିଶାଳୀ ମୁକ୍ତିକାମୀ ଶକ୍ତି ଯୋଗ ଦେଇ ନାହିଁ । ତେଣୁ ଏ ଯୁଦ୍ଧକୁ ପୂର୍ଣ୍ଣ ବିରୋଧ କରିବାକୁ ହେବ । କେବଳ ଜନଯୁଦ୍ଧ ବା ନ୍ୟାୟଯୁଦ୍ଧକୁ ହିଁ ଦେଶ କାହିଁକି ସାରା ଦୁନିଆର ଜନତା ସହଯୋଗ କରିବେ ।

ଦ୍ୱିତୀୟତଃ ବିପ୍ଳବର ପ୍ରଥମାବସ୍ଥା ପରେ କୃଷକ ଏବଂ ଶ୍ରମଜୀବୀ ଶ୍ରେଣୀକୁ ସଂଗଠିତ କଲେ ଦ୍ୱିତୀୟାବସ୍ଥା ଶୀଘ୍ର ଆସିବ ତାହା ବ୍ୟାଖ୍ୟା କରିବାକୁ ଯାଇ ସେ ଲେଖିଥିଲେ, ଅସ୍ଥାୟୀ ସରକାରକୁ କୌଣସି ସମର୍ଥନ ଦିଆ ଯିବ ନାହିଁ ଏବଂ ସେ ସରକାର ଲୋକ ସାଧାରଣଙ୍କ ନିକଟରେ ଯେଉଁ ସବୁ ଶପଥ କରିଛି ତାହାର ମୁଖା ଖୋଲି ଦେବାକୁ ହେବ ।

ସୋଭିଏଟମାନଙ୍କ ଭିତରେ ବଲସେଭିକଦଳ ଯେ ସଂଖ୍ୟାଲଘିଷ୍ଠ, ଏ କଥା ସ୍ୱୀକାର କରିବାକୁ ହେବ ବୋଲି ଲେନିନ ଏହି ପ୍ରବନ୍ଧରେ ଲେଖି

Digitized by srujan ka@gmail.com

ପ୍ରସ୍ତାବ କରିଥିଲେ ଯେ ବଲ୍‌ଶେଭିକ୍‌ମାନଙ୍କ ହାତରେ ସବୁ ପ୍ରତିକ୍ରିୟାଶୀଳ ଅସଂଯବଦ୍ଧ ଦଳସମୂହ ଏକାଠି ହୋଇ ଲଢୁଥିବା ବେଳେ ବଲ୍‌ଶେଭିକ୍ ଦଳ କର୍ମୀମାନଙ୍କ ଦ୍ୱାରା ବିପ୍ଳବରେ ଅସୀମ ଧୈର୍ଯ୍ୟ ଓ ଅଦ୍ଭୁତ ସାହସର ସବୁଠି ଦିନ ଦେଇ ବୃଦ୍ଧି ଗ୍ରାମ ଅଗ୍ରସର କରିବ—ଅସ୍ଥାୟୀ ସରକାରର ସବୁ କ୍ଷମତା ପ୍ରକୃତ ଲୋକଙ୍କ ହାତରେ ରହିବ । ସୋଭିଏଟ୍‌ରେ ଥିବା ପ୍ରତିକ୍ରିୟାଶୀଳ ମେନ୍‌ଶେଭିକ୍ ପ୍ରଭୃତିଙ୍କ ସାହାଯ୍ୟ ନେଇ ପଦାରେ ପକାଇବ ଏବଂ ଶ୍ରମିକ ସୈନିକ୍ ସୋଭିଏଟ୍ ହିଁ ଏକମାତ୍ର ବୈପ୍ଳବିକ ସରକାର ଏକଥା ଜଣାଇଦେବ । ଏହା ଫଳରେ ମଜଦୁର ଶ୍ରେଣୀ ଔପନିବେଶିକଙ୍କ ହାତର କ୍ଷମତା ଛଡ଼ାଇ ନେଇ ହାତ ମୁଠାରେ ନେବେ ।

ସେ ନିର୍ଦ୍ଦେଶ ଦେଲେ ଯେ ଶ୍ରମିକ ଓ ସୈନ୍ୟବାହିନୀର ସୋଭିଏଟ୍ ବଦଳରେ ପାର୍ଲିଅମେଣ୍ଟାରୀ ପ୍ରଜାତନ୍ତ୍ର ଯେ ବୈପ୍ଳବିକ ସରକାର ବୋଲି ମେନ୍‌ଶେଭିକ୍ ଓ ସୋସିଅଲିଷ୍ଟ ରେଭୋଲ୍ୟୁସନାରୀମାନେ ବୁର୍ଜୁଆଙ୍କ ମୁଖପାତ୍ର ହିସାବରେ ପ୍ରଚାର କରୁଛନ୍ତି, ତାହା ବିରୁଦ୍ଧରେ ତୀବ୍ର ପ୍ରଚାର ଓ ଆନ୍ଦୋଳନ ସୃଷ୍ଟି କରିବାକୁ ହେବ । ପୋଲିସ ଓ ରକ୍ଷୀର ସ୍ଥାୟୀ ସୈନ୍ୟ-ବାହିନୀ ଏବଂ ଅମଲାତନ୍ତ୍ରକୁ ଉଠାଇବାଲାଗି ଲେନିନ ପ୍ରବଳ ଦାବୀ କଲେ । ସ୍ଥାୟୀ ସୈନ୍ୟବାହିନୀ ପରିବର୍ତ୍ତେ ସାରା ଋଷର ମଜଦୁର କୃଷୀ ଜନତା ହତିଆର ସଜ୍ଜିତ ହୋଇ ନିଜ ସ୍ୱାର୍ଥ, ନିଜ ସ୍ୱତ୍ତ୍ୱ, ନିଜ ସ୍ୱାଧୀନତା ରକ୍ଷାଲାଗି ଅଗ୍ରସର ହେବ ବୋଲି ଲେନିନ ମାର୍କ୍ସବାଦର ଏହି ସତ୍ୟକୁ ଯୁକ୍ତି ଧରେ ଋଷ୍ ଜନତା ଆଗରେ ଉପସ୍ଥାପିତ କଲେ ।

ତା ପରେ ସବୁ ବ୍ୟାଙ୍କଗୁଡ଼ିକୁ ଏକତ୍ର କରି ଏକ ଜାତୀୟ ବ୍ୟାଙ୍କ ଖୋଲିବା, ଜମିଦାରୀ ପ୍ରଥା ଉଚ୍ଛେଦ କରି ଜମି ବାଣ୍ଟିବା, ନୂଆ ହୋଠ ରୃଷ୍ଟ ଫାର୍ମ ଆରମ୍ଭ କରିବା, କଳ କାରଖାନାର ଉତ୍ପାଦନ ଓ ବଣ୍ଟନ ପ୍ରକ୍ରିୟାକୁ ଶ୍ରମିକ ସୋଭିଏଟ୍‌ର କର୍ତ୍ତୃତ୍ୱାଧୀନ କରିବା କାର୍ଯ୍ୟକ୍ରମ ଲେନିନ ସେହି ଏପ୍ରିଲ ପ୍ରବନ୍ଧରେ ଉପସ୍ଥାପିତ କରିଥିଲେ ।

Digitized by srujan ka@gmail.com

ନୀତି ପ୍ରୟୋଗ କରାଗଲା ଯେଉଁଥିରେ ଗ୍ରାମାଞ୍ଚଳ ଭୂମି ନଥିବା ପ୍ରତ୍ୟେକ ଲୋକ ଏହାକୁ ସାଦରେ ଗ୍ରହଣ କରିବ।

ପ୍ରକୃତରେ 'ଲୋକମାନଙ୍କ ଅକାଂକ୍ଷା' ପୂରଣ କରିବାଲାଗି ସରକାର ଅଗ୍ରସର ହେଲେ। ଯେତେବେଳେ "ଅଲେକଜାଣ୍ଡ୍ରଭ୍ସ୍କୋ" ଜମିଦାରୀରେ ଚାଷୀମାନେ ବିଦ୍ରୋହ କରିଥିଲେ, ଓ ଅନ୍ୟାନ୍ୟ ପ୍ରଦେଶ ମଧ୍ୟରେ ଚାଷୀମାନେ ଜମିଦାରଙ୍କର ଜମି ଉଚ୍ଛେଦ କରିବାରେ ଲାଗିଲେ, କୃଷିମନ୍ତ୍ରୀଙ୍କ ପାଖରେ ଖବର ପହଞ୍ଚିବା ମାତ୍ରେ ସେ 'ଶାନ୍ତି' ସ୍ଥାପନ କରିବାଲାଗି ସୈନ୍ୟବାହିନୀର ଗୁଳି ବନ୍ଧୁକ ସହିତ ଜଣ ପଠାଇଲେ। ସରକାରଙ୍କ ତରଫରୁ ଘୋଷଣା କରାଗଲା ଯେ ଅର୍ଥନୈତିକ ସମ୍ପର୍କରେ ହିଂସା ଓ ଗୁଣ୍ଡାମି ସୃଷ୍ଟି କରିବା ଅତି ଅନାଚାରକ ଓ ବିପଜ୍ଜନକ।

ତାପରେ ଘୋଷଣା କରାଗଲା ଯେ, ଗଣପରିଷଦ କୃଷି ଜମି ଓ ଅନ୍ୟାନ୍ୟ ସମସ୍ୟାରେ ନୀତି ସ୍ଥିର କରିଦେବେ; ସମସ୍ତେ ଶାନ୍ତ ରହନ୍ତୁ।

ଲେନିନ୍ ଠିକ୍ ଏହି ସମୟରେ ବଲଶେଭିକ ଦଳର ଏକ ସମ୍ମିଳନୀ ଡକାଇ ପାର୍ଟିର କାର୍ଯ୍ୟନୀତି, ପାର୍ଟିର ସଂଗଠନ ପ୍ରଭୃତିର ସୁଦୃଢ଼ ଭିତ୍ତିରେ ବିପ୍ଳବର ଦ୍ୱିତୀୟ ଅଧ୍ୟାୟ ଲାଗି ଆୟୋଜନ କଲେ।

ଲେନିନ ଓ ଷ୍ଟାଲିନ ଏହି ସମ୍ମିଳନୀରେ ମୁଖ୍ୟ ଭାଗ ନେଲେ। ଲେନିନ ଦକ୍ଷିଣ ପ୍ରଦେଶର, ସ୍ଭର୍ଦ୍ଲଭ ଲେନିନଗ୍ରାଡ଼ଠାରୁ ଅନ୍ୟ ଜଣେ ଉର୍ଦ୍ଧ୍ୱ କକେସସର ସାଥୀମାନଙ୍କଠାରୁ ସମର୍ଥନ ସଂଗ୍ରହ କରିଥିଲେ। ପାର୍ଟିର ଗାଢ଼ ଧାର୍ଯ୍ୟ କଲାବେଳେ ଦେଖାଗଲା—କାମନେଭ୍, ଜିନୋଭିଭ୍, ରାଇକଭ୍, ଟମସ୍କି, ପ୍ୟାଟାକଭ୍, ବୁଖାରିନ ପ୍ରଭୃତି ଅଳ୍ପ କେତେକ ମୁଷ୍ଟିମେୟ ଲେନିନଙ୍କ ନୀତିର ବିରୋଧ କଲେ। ପରେ ଟ୍ରଟସ୍କି ଯେତେବେଳେ ଅକ୍ଟୋବର ବିପ୍ଳବର ଠିକ୍ ମାସ ପୂର୍ବରୁ ବଲଶେଭିକ ପାର୍ଟିରେ ଯୋଗ ଦେଲେ, ସେ ମଧ୍ୟ ଏହି ସୁବିଧାବାଦୀମାନଙ୍କ ଦଳରେ ଯୋଗ ଦେଇ ଲେନିନଙ୍କ ବିରୋଧ କଲେ। ପାର୍ଟି ଭିତରେ ଏହି ସୁବିଧାବାଦୀମାନେ

Digitized by srujan ka@gmail.com

ଏଣିକି କେତେବେଳେ ଗୁପ୍ତରେ କେତେବେଳେ ପ୍ରକାଶ୍ୟରେ ପାର୍ଟିଗୁଡ଼ିକ ସରକାର ବିରୋଧ କରିଥିଲେ ଏବଂ ଶେଷରେ ସେମାନେ ପାର୍ଟିରୁ ବହିଷ୍କୃତ ହୋଇଥିଲେ ।

ଏପ୍ରିଲ ସମ୍ମିଳନୀ ମଧ୍ୟ ଷ୍ଟାଲିନଙ୍କ ରିପୋର୍ଟ ଉପରେ ଜାତୀୟତା ସ୍ଥିର ହେଲା ଓ ଋଷରେ ଥିବା ବିଭିନ୍ନ ଜାତିର ଆତ୍ମନିୟନ୍ତ୍ରଣ ଓ ଅଲଗା ହୋଇଯିବା ଅଧିକାରକୁ ପୁଣି ଥରେ ଦୋହରାଇ ଦେଲା । ବୁଖାରିନ ଓ ପିଆଟାକୋଭ୍ ଏହି ନୀତିର ବିରୋଧ କରିଥିଲେ; ମାତ୍ର ବହୁ ମତରେ ଉକ୍ତ ପ୍ରସ୍ତାବ ଧାର୍ଯ୍ୟ ହେଲା ।

ସମ୍ମିଳନୀ ପୁରାପୁରି ଲେନିନଙ୍କ ନୀତିକୁ ଗ୍ରହଣ କଲା । ଏଣିକି ବଲଶେଭିକ ପାର୍ଟି ଏକ ସୁସ୍ପଷ୍ଟ କର୍ମଧାରା ନେଇ ବିପ୍ଳବର ଆୟୋଜନରେ ଅଦମ୍ୟ ଉତ୍ସାହରେ ଲାଗିଗଲା ।

ଅସ୍ଥାୟୀ ସରକାରର ନୀତି ଏଣିକି ପ୍ରତ୍ୟେକ କ୍ଷେତ୍ରରେ ସ୍ପଷ୍ଟ ହୋଇ ପଡ଼ିଲା । କୃଷୀଙ୍କ ସମ୍ପର୍କରେ ଯେଉଁ ନୀତି ସରକାର ନେଲା, ତା ଫଳରେ ଅସନ୍ତୋଷ ବହ୍ନି ଜଳି ଉଠିଲା । କୁର୍ସ୍କ, ମୋଗିଲେଭ, ପେର୍ମ ପ୍ରଭୃତି ଅଞ୍ଚଳର କୃଷି ଆନ୍ଦୋଳନକୁ ଦବାଇବା ଲାଗି ସୈନ୍ୟ ପ୍ରେରିତ ହେଲେ ।

ସରକାରର ଏହି କୃଷୀମାରଣ ନୀତିକୁ ମଜଦୁର କୃଷୀର ବନ୍ଧୁ ହେଉଥିବା ମେନଶେଭିକ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରୀମାନେ ସମର୍ଥନ କଲେ । କୃଷି ଅନୁଷ୍ଠାନର ଏକ ମିଳିତ ସଭା ବସି ଏକ ପ୍ରସ୍ତାବ ଧାର୍ଯ୍ୟ କଲେ । ସେଥିରେ ଥିଲା, "ବ୍ୟକ୍ତିଗତ ଅଧିକାରରେ ଥିବା ଜମିକୁ ତୁରନ୍ତ ଦଖଲ କରିବାର ପ୍ରତ୍ୟେକ ଉଦ୍ୟମ କୃଷିଜୀବନରେ ଘୋର ବ୍ୟାଘାତ ଘଟାଇବ ।"

ଏପ୍ରିଲ ୧୯ ତାରିଖରେ ସରକାର "ଶାନ୍ତିରକ୍ଷା" ଆଇନ ପ୍ରଣୟନ କଲେ । ସେହି ଆଇନରେ ଜମିଦାରଙ୍କ ଜମିରେ

Digitized by srujan ka@gmail.com

ମାଳଭୋଜାଗ୍ରଡ୍, ଲଜଣା ଅଦୋମ୍ ଓ ବଦୋଦ୍ର ମଳରେ ଶମ୍ଭ ଘୋଡ଼ ଦଖଲରେ ତାର ଗର୍ଦ୍ଧା ଲକ୍ଷ୍ୟାକର ଅଧିକାର ସଞ୍ଜୁର କରିଗଲା ।

କୃଷି ବିଭାଗର ଜନକଳ୍ପା କ୍ଷମତେଶ୍ୱର 'ପ୍ରଧାନ ଭୂମି କମିଟି' ଆଗରେ କହିଥିଲେ ଯେ, "କୃଷୀ ଆନ୍ଦୋଳନ ଖୁବ୍ ବଢ଼ି ଚାଲିଛି; ତେଣୁ ତୁରନ୍ତ ସ୍ଥାଗିତ ଭୂମି କମିଟି ବସାଯାଉ ।" ଏହି ପ୍ରଧାନ ଭୂମି କମିଟି କାହିଁକି [illegible] ନିଜ ବିଚାରରେ ଭୁଲ ଧାରଣା କରିଥିଲେ ଯେ ଜମି ମାଲିକମାନଙ୍କଠାରୁ ବିନା କ୍ଷତିପୂରଣରେ ଜମି କାଢ଼ି ନିଆଯିବ । ଏ ଧାରଣା ଦୂର କରିବାକୁ ହେବ । ଏମିତି ଘୋଷଣା କରୁଛି ଯେ, ଏ କଥା କେବେହେଲେ କରାଯିବ ନାହିଁ ।

ପର୍ଯ୍ୟନ୍ତ ଜମିଦାର ଓ ଜମି ମାଲିକମାନଙ୍କୁ କ୍ଷତିପୂରଣ ଦିଆଯିବ । ସ୍ୱାଧୀନ ଓଣ୍ଡ୍ରେମ ପିଟ ଯିବ ଯେ, ଆମେ ଜମିଦାରୀ ପ୍ରଥା ଉଠାଇ ଦେଲୁ, ଜମିଗୁଡ଼ିକ କାଢ଼ି ଆଣିଲୁ । ଏହା ଫଳରେ ଚାଷୀମାନେ ସରକାରର ଅସଲ ରୂପ ବୁଝି ପାରିଲେ ଓ ସେହି ସୋସିଅଲିଷ୍ଟ ରିଭଲ୍ୟୁସନାରୀମାନଙ୍କ ଉପରେ ଭରସା ରଖିଥିଲେ ସେମାନଙ୍କ ମୁଖ ଫଟିବାର ସୁଯୋଗ ପାଇଲେ ।

ଖାଦ୍ୟ ସମ୍ପର୍କରେ ସରକାର କୌଣସି ଗଠନ ଧାର୍ଯ୍ୟ କଲେ ନାହିଁ । ଫଳରେ ଦୁର୍ଭିକ୍ଷ ଭାବ ଚାଲିଲା । ଖାଦ୍ୟଶସ୍ୟ ଦାମ ହୁ ହୁ ବଢ଼ିଗଲା ।

ପେଟ୍ରୋଗ୍ରାଡ଼ର ସୋଭିଏଟ ଶିଳ୍ପପତିମାନଙ୍କ ସଙ୍ଗେ ଚୁକ୍ତି କରିଥିଲା ଯେ, ଶ୍ରମିକମାନେ ଦୈନିକ ଆଠଘଣ୍ଟା ଖଟିବେ । ମାତ୍ର ସରକାର ଏ ଚୁକ୍ତିକୁ ସ୍ଥାୟୀଭାବେ ସ୍ୱୀକାର କରିବାକୁ ନାସ୍ତି କରିଦେଲେ ।

ସୈନ୍ୟବାହିନୀରୁ ଯୁଦ୍ଧ ବିରତି ଲାଗି ତାଗିଦ ଆସିଗଲା । ମାତ୍ର ଘରେ ସୈନ୍ୟମାନଙ୍କର ବାପ, ମା, ଭାଇ ଚାଷୀଦଳର ଅତ୍ୟାଚାର ଜୁଲୁମ ବିରୁଦ୍ଧରେ ଯେଉଁ ଆନ୍ଦୋଳନ କରୁଥିଲେ, ସେ ଖବର ନ ଦେବାପାଇଁ

Digitized by srujan ka@gmail.com

ଏହାର ଫଳରେ ବୁର୍ଜୁଆ ମନ୍ତ୍ରୀ ଗୁଚକଭ୍ ଓ ମିଲ୍ୟୁକଭ୍‌ଙ୍କୁ ମନ୍ତ୍ରୀମଣ୍ଡଳରୁ ବିଦାୟ ଦିଆଗଲା । ମେନସେଭିକ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରୀମାନେ ସୋଭିଏଟର ମୂଳ ନୀତି ବଦଳାଇଲେ ଏବଂ ମନ୍ତ୍ରୀ ମଣ୍ଡଳରେ ସୋଭିଏଟ ପ୍ରତିନିଧି ଯୋଗ ଦେବାର ସ୍ଥିର କଲେ ।

ମିଳିତ ମନ୍ତ୍ରୀମଣ୍ଡଳର କାର୍ଯ୍ୟ ମଧ୍ୟ ପୂର୍ବପରି ଜମିଦାର, ଜମିମାଲିକ ଓ ଶିଳ୍ପପତିମାନଙ୍କୁ ସାହାଯ୍ୟ କଲା । ବିପ୍ଳବରେ ଯେଉଁସବୁ ନୂତନ ଅଧିକାର ଜନସାଧାରଣ ହାସଲ କରିଥିଲେ, ତାହାକୁ ଅଭିନ ବାହୁନର ଦୁହାଇ ଦେଇ, ଶାନ୍ତିରକ୍ଷାର ଦୁହାଇ ଦେଇ ସରକାର ଓ ସରକାରଙ୍କ ଦଳମାନେ ଛଡ଼େଇ ନେବାରେ ଲାଗିଲେ ।

ଜମିଦାର ଓ ଜମିମାଲିକମାନେ ହଜାର ହଜାର ଏକର ଜମି ହସ୍ତାନ୍ତର କରି ଦେବା କମେଇଲେ । ବିଶେଷତଃ ବିଦେଶୀମାନଙ୍କୁ ଏହି ଜମି ଦିଆଯାଉଥିଲା । ପ୍ରଥମେ ସରକାର ଜମି ବିକ୍ରି ଖରିଦ ବନ୍ଦ ଆଇନ କରିଥିଲେ । ପରେ ନ୍ୟାୟ ବିଭାଗର ସହକାରୀ ମନ୍ତ୍ରୀ ଜମି କିଣି ଖରିଦ ସମ୍ବନ୍ଧୀୟ ହକୁ ବନ୍ଦକଣା ଉଠାଇ ଦେଲେ ।

ଶ୍ରମିକମାନଙ୍କ ପ୍ରତି ମଧ୍ୟ ଅସ୍ଥାୟୀ ସରକାର ସେହିପରି ନୀତି ଧରିଥିଲେ, ତାହାର କିଛି ଅଦଳବଦଳ ହେଲା ନାହିଁ । ଶ୍ରମିକ ଓ ମାଲିକ-ମାନଙ୍କ ମିଳିତ କମିଟି ସ୍ଥାପନ କରି କାରଖାନାରେ ଶିକ୍ଷା ଘଣ୍ଟା ଦାବିକୁ ନିଆଯାଇଥିଲା । ମାତ୍ର କମ୍ପାନୀମାନେ ଶ୍ରମିକର ଏ ସ୍ଥାନ ଦେବାର ତାହା ସ୍ଥିର କରିପାରିଲେ ନାହିଁ । ଗୋଟିଏ ତଦନ୍ତ କମିଶନ ବସି ମଇ ମାସ ୨୩ ତାରିଖରେ ଶ୍ରମିକମାନଙ୍କର ସବୁ ଦାବୀକୁ ପ୍ରତ୍ୟାଖ୍ୟାନ କରିଦେଲେ ।

ଏପଟେ ବିଭିନ୍ନ ଜାତି ନିଜ ନିଜ ବାସଭୂମିରେ ମୁକ୍ତ, ସ୍ୱାଧୀନ ଓ ସୁଖୀ ହେବା ଦାବୀ କଲାବେଳେ ରୁଷ ବୁର୍ଜୁଆ ଦଳ, ମେନସେଭିକ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରୀ ଦଳ 'ଅଖଣ୍ଡ ଓ ମିଳିତ ରୁଷ'ର ଧ୍ୱଜା ଧରିଲେ । ବିଭିନ୍ନ ଜାତିମାନଙ୍କର ଆତ୍ମନିୟନ୍ତ୍ରଣ ଦାବୀକୁ ଏଡ଼ିବାକୁ 'ମିଳିତ'

Digitized by srujan ka@gmail.com

ସରକାର ବହୁ ବହୁ ସୁବିଧା ଦେଲେ; ମାତ୍ର ସେ ସୁବିଧା ଜାତିସତ୍ତାଗୁଡ଼ିକୁ ଆନ୍ଦୋଳନକୁ ସନ୍ତୁଷ୍ଟ କରି ପାରିଲା ନାହିଁ।

ୟୁକ୍ରେନରେ 'ରୁଖ' ନାମକ ଏକ ଅନୁଷ୍ଠାନ ଗଢ଼ାଗଲା। ୟୁକ୍ରେନ ଋଷରୁ ଅଲଗା ହୋଇଯିବାକୁ ଦାବି କଲା। ଫିନଲାଣ୍ଡର ଜନତା ସ୍ୱତନ୍ତ୍ରତା ଦାବୀ କଲେ। ଜର୍ଜିଆରେ ମଧ୍ୟ ଆତ୍ମନିୟନ୍ତ୍ରଣ ଆନ୍ଦୋଳନ ତୀବ୍ର ହୋଇଉଠିଲା। ଯେଉଁ ସମସ୍ତଙ୍କୁ ଜାରଶାସନ ଫେବୃଆରୀ ୧୯୧୭ ବିଦ୍ରୋହରେ ଜର୍ଜିଆବାସୀଙ୍କୁ ନିର୍ଦ୍ଦୟ ଭାବରେ ଟାଣି ବନ୍ଦୀ ହୋଇଥିଲେ ଅସ୍ଥାୟୀ ସରକାର ସେମାନଙ୍କୁ ମୁକ୍ତ କରିଦେଲେ। ଏହା ଫଳରେ ଜର୍ଜିଆରେ ଅସନ୍ତୋଷ ଓ କ୍ରୋଧର ବହ୍ନି ଜଳି ଉଠିଲା। ପ୍ରତ୍ୟେକ ଜାତିକୁ ଆତ୍ମନିୟନ୍ତ୍ରଣ ଅଧିକାର ଦେବା ନୀତି ମିଳିତ ସରକାର ଗ୍ରହଣ କରିବା ପରିବର୍ତ୍ତେ ଆତ୍ମନିୟନ୍ତ୍ରଣ ଆନ୍ଦୋଳନକୁ ଦମନ କରିବା ଲାଗି ସବୁ ପ୍ରକାର ଚେଷ୍ଟା କଲା।

ଅସ୍ଥାୟୀ ସରକାର ଓ ମିଳିତ ସରକାର ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ରହିଲା ନାହିଁ। ମିଳିତ ସରକାର ମେନସେଭିକ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରୀମାନଙ୍କ ଯୋଗୁଁ ମେନ୍‌ସେଭିକ ପରିଚାଳିତ ସୋଭିଏତ୍‌ଗୁଡ଼ିକର ସମର୍ଥନ ପାଇଲା—ଏତିକି ମାତ୍ର।

ଜୁଲାଇ ମାସ ପର୍ଯ୍ୟନ୍ତ ମଧ୍ୟ ସରକାର ମେନ୍‌ସେଭିକ୍ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରୀଙ୍କ ଯୋଗୁଁ ତିଷ୍ଠି ପାରିଲା। ଏହା ପ୍ରମାଣିତ ହେଲା—ମିଳିତ ମନ୍ତ୍ରୀମଣ୍ଡଳ ଓ ଅସ୍ଥାୟୀ ସରକାର ମଧ୍ୟ ପ୍ରକୃତରେ ପ୍ରବଞ୍ଚନା ମାତ୍ର।

ଏହି ଅବସରରେ ବଲଶେଭିକମାନଙ୍କ ପ୍ରବଳ ଉଦ୍ୟମ ଫଳରେ ସୋଭିଏତ୍‌ମାନଙ୍କର ପ୍ରଥମ କଂଗ୍ରେସ ବା ଅଧିବେଶନ ଜୁନ ୧୬ ତାରିଖରେ ବସିଲା। ଏଥିରେ ଏକ ହଜାରରୁ ଅଧିକ ପ୍ରତିନିଧି ଯୋଗ ଦେଇଥିଲେ। ମେନସେଭିକ୍‌ମାନଙ୍କର ୨୪୮ ଜଣ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରୀଙ୍କର

Digitized by srujan ka@gmail.com

୨୮୪ ଜଣ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ବଲ୍‌ଶେଭିକ ଦଳର ମୋଟେ ୧୦୫ ଜଣ ପ୍ରତିନିଧି ନିର୍ବାଚିତ ହୋଇଥିଲେ ।

ଅନନ୍ତରେ ଜୁନ୍‌ମାସରୁ ହୋଇ ସଂଖ୍ୟାଗରିଷ୍ଠ ମେନଶେଭିକ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରୀମାନେ ବଲଶେଭିକଙ୍କ ବିପକ୍ଷରେ ପ୍ରଚାର କରିବାକୁ ବସିଲେ; ସଭାରେ "ବିଶ୍ୱାସଘାତ ଗଣଶତ୍ରୁ" ହୋଇଛି ବୋଲି ଶ୍ରମିକ ଶ୍ରେଣୀ ତଥା ସମର୍ଥକମାନଙ୍କ ନିକଟରେ ସାବଧାନୀ କରିବାକୁ ଉଦ୍ୟମ କଲେ ।

ସୋଭିଏଟ୍ ସମ୍ମିଳନୀରେ ମନ୍ତ୍ରୀ କେରେନସ୍କିଙ୍କ ଠାରୁ ଆରମ୍ଭ କରି ମେନଶେଭିକ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରୀମାନେ ଖୁବ୍ ହମ୍ବିତମ୍ବା କଲେ, ଖୁବ୍ ଆସ୍ଫାଳନ କଲେ । ସମ୍ମିଳନୀରେ କହିବାକୁ ଲେନିନ୍‌ଙ୍କୁ ଖୁବ୍ ଅଳ୍ପ ସମୟ ଦିଆଯାଇଥିଲା । ତାଙ୍କ ବକ୍ତୃତା ନ ଶୁଣି ଆଗରେ ବସିଥିବା ପ୍ରତିକ୍ରିୟାବାଦୀ ନେତାମାନେ 'ଲେନିନ୍‌ଙ୍କୁ ଆଉ ସମୟ ଦିଅନାହିଁ' ବୋଲି ଚିତ୍କାର କରି ଉଠିଲେ । ମାତ୍ର ପଛଆଡ଼ୁ ଲୋକେ ପାଟିକରି ଉଠିଲେ, 'ଆଉ ସମୟ ଦିଅ ।' ଲେନିନ୍ କହି ଚାଲିଲେ । ଶ୍ରୋତାଙ୍କର କରତାଳିରେ ଘର ଉଚ୍ଛୁଳି ଉଠିଲା । ସୋଭିଏଟ୍ ହାତକୁ ସମସ୍ତ କ୍ଷମତା ଆସିଲେହିଁ ପ୍ରକୃତରେ ବିପ୍ଳବର ବିଜୟ ହେବ ବୋଲି ଲେନିନ୍ ନିଜ ବକ୍ତୃତାରେ ପ୍ରତିପାଦିତ କଲେ ।

ଅବଶ୍ୟ ସୋଭିଏଟ୍‌ର ଅଧିବେଶନରେ ବଲଶେଭିକମାନଙ୍କ ମତ ଗୃହୀତ ହେଲନାହିଁ; ମାତ୍ର ସୋଭିଏଟ୍ ଅଧିବେଶନରେ ଲେନିନଙ୍କ ବକ୍ତୃତା ଓ ବଲଶେଭିକମାନଙ୍କ ପ୍ରଚାର ଫଳରେ ସୈନ୍ୟ, ଶ୍ରମିକ ଓ କୃଷକ ଜାତିମାନଙ୍କ ଭିତରେ ନୂଆ ଚେତନା ଜାଗ୍ରତ ହୋଇ ଉଠିଲା ।

**ଏପ୍ରିଲ ମାସରେ ଯେଉଁ ଜନବିକ୍ଷୋଭ ଦେଶରେ ବ୍ୟାପିଥିଲା ତାହା ଜୁନମାସରୁ ଏକ ସଙ୍ଗୀନ ରୂପ ଧରିଲା । ଏତେବେଳକୁ ବଲଶେଭିକମାନେ ମଧ୍ୟ ନିଜର ଶକ୍ତିକୁ ସଂହତ କରି ସାରିଥିଲେ । ଶ୍ରମିକ ଜନତାର ଏହି**

Digitized by srujan ka@gmail.com

ବିକ୍ଷୋଭକୁ ଏକ ସଂଗଠିତ ରୂପ ଦେବାପାଇଁ ବଲଶେଭିକମାନେ ଜୁନ ୧୦ ତାରିଖରେ ଏକ ପ୍ରଦର୍ଶନର ବ୍ୟବସ୍ଥା କରିଥିଲେ । ମାତ୍ର ସୋଭିଏଟ୍ ବୈଠକରେ ମେନସେଭିକ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରୀମାନେ ବହୁ ମତରେ ଏକ ପ୍ରସ୍ତାବ ପାଶ୍ କରି ପ୍ରଦର୍ଶନ ନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ସୋଭିଏଟ୍‌ର ମତକୁ ମାନି କରି ବଲଶେଭିକମାନେ ଶ୍ରମିକ-ମାନଙ୍କ ନିକଟକୁ ଗଲେ । ମାତ୍ର ସେଦିନ ଜୁନ ୯ ତାରିଖ ଥିଲା । ଅତି ଅଳ୍ପ ସମୟ ଭିତରେ ସେମାନେ ପ୍ରଦର୍ଶନକୁ ବନ୍ଦ କରିବାରେ ସଫଳ ହେଲେ । ମଜଦୁରମାନଙ୍କ ଭିତରେ ଅସନ୍ତୋଷ ଆହୁରି ଦ୍ୱିଗୁଣିତ ହେଲା ।

ଶେଷରେ ମଜଦୁରମାନଙ୍କ ଚାପରେ ଜୁନ ୧୮ ତାରିଖରେ ଏହି ପ୍ରଦର୍ଶନ ହେବାର ସ୍ଥିର ହେଲା । ସେହି ଦିନ ସୈନ୍ୟବାହିନୀ ଯୁଦ୍ଧକ୍ଷେତ୍ରରେ ଏକ ବିରାଟ ଆକ୍ରମଣ ଆରମ୍ଭ କରିବାର କଥା ଥିଲା । ଏହି ସୁଯୋଗରେ ମେନସେଭିକ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରୀମାନେ ଜୁନ ୧୮ ତାରିଖ ପ୍ରଦର୍ଶନକୁ ନିଜ ଆୟତ୍ତରେ ରଖି ବଲଶେଭିକମାନଙ୍କୁ ଗୋଟିଏ ଶିକ୍ଷା ଦେବେ ବୋଲି ଭାବିଲେ ।

ଧାର୍ଯ୍ୟଦିନରେ ନିଜ ଜୀବନକୁ ବଳି ଦେଇଥିବା ଶହୀଦମାନଙ୍କ ସ୍ମୃତିସ୍ତମ୍ଭ ନିକଟରେ ଏହି ପ୍ରଦର୍ଶନ ହେଲା । ପେଟ୍ରୋଗ୍ରାଡ ସହରର ୫ ଲକ୍ଷ ଶ୍ରମିକ ଓ ସୈନ୍ୟ ପ୍ଲାକାର୍ଡ଼, ପୋଷ୍ଟର ଧରି ଯୋଗ ଦେଲେ । ବଲଶେଭିକ୍ ପାର୍ଟିର ରଣ ଡାକରେ ଜଗତ କମ୍ପି ଉଠିଲା । ଶ୍ରମିକ ସମ୍ପ୍ରଦାୟ ବଲଶେଭିକ୍ ପାର୍ଟିର ନେତୃତ୍ୱରେ ପରିଚାଳିତ । ମେନସେଭିକ ପ୍ରସ୍ତୁତିର ସବୁ ଆଶା ଚୂନା ହୋଇଗଲା । ସରକାର ଉପରେ ବିଶ୍ୱାସ ଅଛି ବୋଲି ଖୁବ୍ ଅଳ୍ପ ଲୋକ କହୁଥିଲେ । ପ୍ରମାଣିତ ହେଲା ଯେ ଶ୍ରମିକଶ୍ରେଣୀ ବଲଶେଭିକଙ୍କ ନୀତିକୁ ଅଧିକ ସମର୍ଥନ କରୁଛନ୍ତି ।

ତଥାପି ମଧ୍ୟ ସରକାର ଓ ଏହି ଦଳମାନେ ନିଜ ଜିଦ୍‌ରୁ ପାଦେ ଘୁଞ୍ଚିଲେ ନାହିଁ । ସୈନ୍ୟମାନଙ୍କୁ କେବଳ ଯୁଦ୍ଧରେ ବଳରକମ ଲଢ଼ିବାପାଇଁ,

Digitized by srujan ka@gmail.com

ସହରରେ ଅସ୍ତ୍ରବଳ ଦେବାଲାଗି ୧୫୦ ଟି ଖବର କାଗଜରେ ସରକାର ପ୍ରଚାର କଲେ । ମାତ୍ର ସୈନ୍ୟମାନେ ଏଥିରେ ଅଳ୍ପ ଭୁଲିଲେ ନାହିଁ । ବଲସେଭିକମାନଙ୍କର ପ୍ରତ୍ୟେକ ଖବରକାଗଜ ସୈନ୍ୟମାନଙ୍କ ଭିତରେ ଖୁବ୍ ଆଦରର ବସ୍ତୁ ହେଲା । ସୈନ୍ୟମାନଙ୍କ ଭିତରେ ବଲସେଭିକ ପାର୍ଟି ତରଫରୁ କେନ୍ଦ୍ରମାନ ଖୋଲାଯାଇଥାଏ । ସେଠାରେ ଖବରକାଗଜ ଆଲୋଚନା, ବକ୍ତୃତା ଓ ନୂଆ ମତ୍ ମତ୍ ହୁଏ । ସେଥିରେ ସୈନ୍ୟମାନେ ଅତି ଉଦ୍‌ଗ୍ରୀବ ହୋଇ ବଲସେଭିକମାନଙ୍କ କଥା ଶୁଣନ୍ତି । ବଲସେଭିକ ପାର୍ଟିର ସୈନ୍ୟବିଭାଗ କମିଟି ଯୁଦ୍ଧକ୍ଷେତ୍ରରେ ସୈନ୍ୟମାନଙ୍କ ସଙ୍ଗେ ସମ୍ପର୍କ ରକ୍ଷା କଲେ । ଏ ସବୁ ଉଦ୍ୟମ ଫଳରେ ଜୁନ ୧୬ ତାରିଖରେ ସୈନ୍ୟ ବିଭାଗରେ ଥିବା ବିଭିନ୍ନ ସ୍ଥାନର ବଲସେଭିକ କମିଟିର ପ୍ରତିନିଧିମାନଙ୍କ ସମ୍ମିଳନ ହେଲା । ସେଥିରେ ୫୦୦ ରେଜିମେଣ୍ଟ, ଗୃହେଟି ବଡ଼ ଯୁଦ୍ଧଜାହାଜ ଓ ରେଲ ସହରରେ ଥିବା ସୈନ୍ୟମାନଙ୍କ ପ୍ରତିନିଧି ଯୋଗ ଦେଇଥିଲେ । ଦଶ ଦିନକାଳ ଏହି ସମ୍ମିଳନ ଚାଲିଲା । ଷ୍ଟାଲିନ ଜାତି ସମସ୍ୟା ଓ ଅସ୍ତ୍ର-ସଜ୍ଜୀକରଣ ଏବଂ ଲେନିନ୍ ଭୂମି ସମସ୍ୟା ଉପରେ ବକ୍ତୃତା ଦେଇଥିଲେ । ସୈନ୍ୟବାହିନୀର ଯେ ଅସ୍ଥାୟୀ ମିଳିତ ସରକାର ଓ ମେନ୍‌ସେଭିକ୍, ସୋସିଆଲିଷ୍ଟ ରେଭଲ୍ୟୁସନାରିମାନଙ୍କ ଉପରେ ବିଶ୍ୱାସ ତୁଟିଯାଉଛି ତାହାହିଁ ଏଥିରୁ ସ୍ପଷ୍ଟ ହୋଇ ଆସୁଥିଲା ।

ବଲସେଭିକମାନେ ଓ ଲେନିନ୍ ଚାହୁଁଥିଲେ ଯେ ଶ୍ରମିକମାନେ ସୈନ୍ୟଙ୍କ ସହିତ ମିଳି ରାଷ୍ଟ୍ର କ୍ଷମତା ହାତକୁ ନେବେ । ଫେବୃଆରି ବିପ୍ଳବ ପରେ ଉତ୍ତର ଦେଶର ସହରମାନଙ୍କରେ ସଶସ୍ତ୍ର ସେନାବାହିନୀ ଓ ଜଳସେନା ( ନୌବାହିନୀ ) ସବୁ ଗଢି ଉଠୁଥିଲେ ।

ବଲସେଭିକମାନେ ଜାଣିଥିଲେ ଯେ ରୁଷ ପୁଞ୍ଜିପତି ବୁର୍ଜୁଆ ଶ୍ରେଣୀ ହାତରେ ଜେମସ୍ତ୍ୱୋ, ରାଷ୍ଟ୍ର ଡୁମା, ସହର ଡୁମା, ଯୁଦ୍ଧ ଶିଳ୍ପ କମିଟି ପ୍ରଭୃତି ଅନୁଷ୍ଠାନ ଥିବାରୁ ଫେବୃଆରି ବିପ୍ଳବରେ ସର୍ବହରା ଶ୍ରେଣୀକୁ ଠକି ଦେଇ ବୁର୍ଜୁଆ ଶ୍ରେଣୀ ରାଷ୍ଟ୍ର କ୍ଷମତା ହାତକୁ ନେଇଗଲେ । ସର୍ବହରା ଶ୍ରେଣୀ

Digitized by srujan ka@gmail.com

**ସେହିସବୁ ନିଜ ସଶସ୍ତ୍ର ସେନା, ନୌସେନା, ଶ୍ରମିକ ଯୁବଜନ ବା ସ୍ୱେଚ୍ଛା-ସେବୀ ସଂଘ ପ୍ରଭୃତି ଠାଣିଅ ଅନୁଷ୍ଠାନ ବଳରେ ନିଜ ହାତକୁ କ୍ଷମତା** ଆଣିବ ଓ ସେ କ୍ଷମତାକୁ ରକ୍ଷା କରିବ।

ମାର୍ଚ୍ଚ ବିପ୍ଳବର ପ୍ରଧାନ ରକ୍ଷାକବଚ ଏହି ସଶସ୍ତ୍ର ସେନା ଓ ନୌସେନାକୁ ପଙ୍ଗୁ କରି ଦେବାଲାଗି ସରକାର ଉଦ୍ୟମ କଲେ। ମେଜରଜେନେରାଲ ଓ ଖୋଜ ଅଲିଙ୍କ ପରି ଜଣାଶୁଣା ଲୋକମାନେ ଖୁଣ୍ଟିଧାରୀ ସରକାରର ଏ ନୀତିକୁ ସମର୍ଥନ କଲେ।

ଜୁନ ମାସ ବିପ୍ଳବ ଇତିହାସରେ ଆଉ ଏକ ଅଧ୍ୟାୟ ଯୋଗକରି ଗଲା।

ଜୁଲାଇ ମାସରେ ମଧ୍ୟ ସରକାର ପୂର୍ବପରି ସଙ୍କଟର ସମ୍ମୁଖୀନ ହେଲେ। ବିପ୍ଳବର କୌଣସି ଉଦ୍ଦେଶ୍ୟ, କୌଣସି ଲକ୍ଷ୍ୟ ପୂରଣ ହେଲା ନାହିଁ। ଅର୍ଥ ସଙ୍କଟ, ଖାଦ୍ୟ ସଙ୍କଟ ଗୃହଯୁଦ୍ଧ ବ୍ୟାପିବାରେ ଲାଗିଲା। ଏପରି ପ୍ରବୃତ୍ତି, ବା ଏପରି ଦଳ ରହିଲା ନାହିଁ ଯେଉଁଦଳ କି ଜନବିକ୍ଷୋଭକୁ ନେଇ ହେବ ନାହିଁ। ଜୁଲାଇ ମାସରେ ଏହାହିଁ ହେଲା ଦେଶର ଅବସ୍ଥା।

ଏହି ସନ୍ଦେହର ବଳିଷ୍ଠ ଭାବରେ ଯା ଉପରେ ନାହିଁ ନଥିବା ଲୋକମାନଙ୍କ ଲାଗି ମଧ୍ୟ ବୁର୍ଜୁଆ ଦଳମାନେ ରହିଥାଆନ୍ତି। ବାଂଲାଦେଶର ପାଇଁ ଏ କଥା ଅଧିକ ଖାଟିଥାଏ।

ତେଣୁ ଜନବିକ୍ଷୋଭକୁ ଏକ ସଂଗଠିତ ରୂପ ଦେଇ ଉପଯୁକ୍ତ ବାଟରେ ଚଳାଇବା ଲାଗି ବଙ୍ଗବନ୍ଧୁ ପାଇଁ ପ୍ରାଣପଣେ ଉଦ୍ୟମ କଲା। ପ୍ରଦର୍ଶନକାରୀମାନେ "ହୋସେନଙ୍କୁ କ୍ଷମତା ଦିଅ" ପ୍ରଭୃତି ଧ୍ୱନି ଦେଇ ଯାଉଥିବାବେଳେ ସରକାର ଓ ବୁର୍ଜୁଆ ଦଳଙ୍କ ଏବଂ ପ୍ରତି-ବିପ୍ଳବୀମାନେ ଜନତା ଉପରେ ଗୁଳି ଚଳାଇଲେ। ଖୋସାଙ୍କ ବାହୁଙ୍କୁ ଅନୁସରଣ କଲେ। ଜୁଲାଇ ଶେଷ ଭାଗରେ ଏହି ପ୍ରଦର୍ଶନକୁ ଭାଙ୍ଗି ଦେବାଲାଗି ସରକାର ଏବଂ ମେଜରଜେନେରାଲ

Digitized by srujan ka@gmail.com

ଓ ସୋସିଅଲିଷ୍ଟ ବିପ୍ଳବବାଦୀମାନେ ବାଧାପ୍ରଦାନ କଲେ । ବଲ୍‌ସେଭିକ୍‌ମାନଙ୍କ ଅଫିସ ଘର ଓ ଖବରକାଗଜ ଘରକୁ ଲୁଟ୍‌ କରି ଧ୍ୱଂସ କରାଗଲା ।

ଜୁଲାଇ ୪ ତାରିଖରେ ଆନ୍ଦୋଳନ ଅସ୍ଥାୟୀ ସୈନ୍ୟବାହିନୀ ଆସି ପେଟ୍ରୋଗ୍ରାଡ଼ ସହରକୁ ଏକ ସୈନ୍ୟ ଛାଉଣୀରେ ପରିଣତ କରିଦେଲେ । ସ୍ଥାନେ ସ୍ଥାନେ ସଶସ୍ତ୍ର ସୈନିକମାନେ ବୁଲିଲେ ।

ଲେନିନଙ୍କୁ ଏହି ଶାସ୍ତି ଦେବାପାଇଁ ବୁର୍ଜୁଆ-କାଗଜମାନେ ଦାବୀ କଲେ । ବଲ୍‌ସେଭିକ୍‌ମାନଙ୍କ କର୍ମୀଙ୍କ ଦଳକୁ ଜେଲ ପଠାଇ ଦିଆଗଲା । ବଲ୍‌ସେଭିକ୍‌ମାନଙ୍କ ପ୍ରତି କଠୋର ଶାସ୍ତି ବିଧାନର ପ୍ରସ୍ତାବମାନ ଆସିଲା

ବଲ୍‌ସେଭିକ୍‌ମାନେ ପୁଣି ଲୁଚି ଲୁଚି କାମ କଲେ । ଲେନିନଙ୍କୁ ପୁଣି ଲୁଚିରହି ସମ୍ପାଦନ ପରିଚାଳନା କରିବାକୁ ପଡ଼ିଲା । ସେମାନଙ୍କ ଅଫିସ ଓ ଛାପାଖାନା ଚୂନାମାଟି କରାଗଲା । ଏହି ଆକ୍ରମଣରୁ ନିଜକୁ ରକ୍ଷାକରି ପୁଣି ଅତି ଦୃଢ଼ତା ଦ୍ୱିଗୁଣ ଉତ୍ସାହରେ ବଲ୍‌ସେଭିକ୍‌ମାନେ କାମରେ ଲାଗିଗଲେ । ଜୁଲାଇ ପ୍ରଦର୍ଶନକୁ ରକ୍ତ ନଦୀରେ ସରକାର ବୁଡ଼ାଇଦେଲା; ମାତ୍ର ଏଥର ଜନତା ରୁଷ ସରକାର ଓ ମେନ୍‌ସିଭିକ୍‌ ଦଳମାନଙ୍କର ପ୍ରକୃତ ରୂପ ବୁଝି ପାରିଲେ ।

ଏଣୁ ଯେ ମେନ୍‌ସିଭିକ୍‌ ଓ ସୋସିଅଲିଷ୍ଟ ରିଭୋଲ୍ୟୁସନାରୀଙ୍କ ଦଳ ଭିତରେ ମେମ୍ବରମାନେ ସାଧାରଣ କର୍ମୀ ଥିଲେ, ସେମାନେ ନିଜ ଦଳର ନୀତି ଓ ନେତାମାନଙ୍କ ଉପରେ ବିଶ୍ୱାସ ହରାଇଲେ । ବଲ୍‌ସେଭିକ୍‌ପାର୍ଟିର ଶକ୍ତି ଓ ସଂଗଠନ ବଢ଼ି ଚାଲିଲା । ଅଗଷ୍ଟ ମାସ ଭିତରେ ପେଟ୍ରୋଗ୍ରାଡ଼ ସହରରେ ଅଠେଇଶ ହଜାର ଲୋକ ବଲ୍‌ସେଭିକ୍‌ପାର୍ଟିର ସଭ୍ୟ ହୋଇଥିଲେ ।

ଏହି ଅବସ୍ଥାରେ ବଲ୍‌ସେଭିକ୍‌ ପାର୍ଟିର ୬ଷ୍ଠ କଂଗ୍ରେସ ବସି ନିଜର ଲକ୍ଷ୍ୟ ଓ କର୍ମପନ୍ଥାକୁ ପୁଣି ସମୟୋପଯୋଗୀ କରିନେଲେ ଓ ଅଗାମୀ

Digitized by srujan ka@gmail.com

ଲଢ଼େଇପାଇଁ ଆୟୋଜନରେ ଲାଗିଗଲେ । ଫେବୃଆରୀ ବିପ୍ଳବ ପରେ ଶାନ୍ତିପୂର୍ଣ୍ଣ ଉପାୟରେ ସମ୍ପୂର୍ଣ୍ଣ ବିଜୟଲାଭର କମ୍ୟୁନିଷ୍ଟ ଦଳର ଅର୍ଥାତ୍ ଅବଶ୍ୟ ବୋଲ୍‌ଶେଭିକ୍ ମାନଙ୍କର ଆଶା ଓ ସମ୍ଭାବନା ଆଉ ରହିଲା ନାହିଁ । ସେ ସୁଯୋଗ ପାଇବାପାଇଁ ପ୍ରତି-ବିପ୍ଳବ ଅର୍ଥାତ୍ ବିପ୍ଳବର ପୂର୍ବ ଅବସ୍ଥାକୁ ଫେରାଇବା ଏକ ଆନ୍ଦୋଳନ ମୁଣ୍ଡ ଟେକି ଉଠିଲା । ଅଳ୍ପ ସମୟରେ ଶ୍ରମିକ, ସୈନ୍ୟ ଓ କୃଷକ ଆନ୍ଦୋଳନକାରୀ ଦଳମାନଙ୍କ ଉପରେ କେରେନ୍‌ସ୍କିଙ୍କ ନେତୃତ୍ୱକୁ ମାନିଲେ । କେରେନ୍‌ସ୍କି ପାଇଁ ଏମାନଙ୍କ ସମ୍ପର୍କ ଦରକାର ନଥିଲା ।

କୋର୍‌ନିଲଭ୍ ନାମକ ସେନାପତିଙ୍କୁ ଅସ୍ଥାୟୀ ସରକାର ଏହି ସୈନ୍ୟବାହିନୀର ପ୍ରଧାନ ସେନାପତି ପଦରେ ବରଣ କରିଥିଲେ । ସେହି କୋର୍‌ନିଲଭ୍‌ଙ୍କୁ ମଧ୍ୟ ମଜଦୁରର ପ୍ରଦର୍ଶନ ଉପରେ ଗୁଳି ଚଳାଇବାକୁ ହୁକୁମ ଦିଆଯାଇଥିଲା । କୋର୍‌ନିଲଭ୍ ବୁର୍ଜୁଆମାନଙ୍କର ପ୍ରଧାନ ସମ୍ପ୍ରଦାୟ ଓ ରକ୍ଷାକର୍ତ୍ତା । ପୁଞ୍ଜିପତି ଖବରକାଗଜମାନେ କୋର୍‌ନିଲଭ୍‌ଙ୍କର ଭିନ୍ନ ପ୍ରଶଂସା ଗାଇ ତାଙ୍କୁ ଆକାଶକୁ ଟେକୁଥିଲେ । ସାଧାରଣ ସୈନ୍ୟଙ୍କ ଭିତରେ ଖବରକାଗଜ, ବକ୍ତୃତା ଓ ପ୍ରଚାର ପତ୍ର ଜରିଆରେ 'କୋର୍‌ନିଲଭ୍ ଯୁଦ୍ଧକ୍ଷେତ୍ରରେ ଅସାଧ୍ୟ ସାଧନ କରିପାରନ୍ତି ଏବଂ ତାଙ୍କ ବିନା ସେନାପତି ରହିବା ଅସମ୍ଭବ' ଏହି କଥା ପ୍ରଚାର କରାଯାଇଥିଲା । ଉଦ୍ଦେଶ୍ୟ ଥିଲା କୋର୍‌ନିଲଭ୍ ସୈନ୍ୟବାହିନୀର ସର୍ବାଧିନାୟକ ହେବେ । ଏହାର ମୂଳ ଲକ୍ଷ୍ୟ ହେଉଛି—ଫେବୃଆରୀ ବିପ୍ଳବରେ ବିପ୍ଳବୀ ମଜଦୁର, କୃଷକ ସୈନ୍ୟ ଯାହା ସବୁ ଦଖଲ ତାହାକୁ ଉଲଟେଇ ଦେବା—ଫଳରେ ଅସ୍ଥାୟୀ ସରକାର ପୁଣି ବୁର୍ଜୁଆ ଶ୍ରେଣୀ ହାତରେ ରହିବ ଏବଂ ଶ୍ରମିକ ଆନ୍ଦୋଳନ, ସୈନ୍ୟ ବିଦ୍ରୋହ ଓ କୃଷି ଆନ୍ଦୋଳନ ଉପରେ ଚରମ ଦମନ ଲାଗି ସୁଯୋଗ ଉପସ୍ଥିତ ହେବ । ମେନସେଭିକ୍ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରିଙ୍କ ଦୁର୍ବଳତା ବୁର୍ଜୁଆ ଶ୍ରେଣୀକୁ ପ୍ରତି-ବିପ୍ଳବ ଲାଗି ଖୁବ୍ ସାହସ ଦେଲା ।

କୋର୍‌ନିଲଭ୍‌ଙ୍କୁ ପ୍ରଧାନ ସେନାପତି କରି ବୁର୍ଜୁଆମାନେ ବଲ୍‌ଶେଭିକ୍‌ମାନଙ୍କ ବିରୁଦ୍ଧରେ ତୀବ୍ର ଆନ୍ଦୋଳନ ଚଳାଇଲେ । ରୁଷ ବିପ୍ଳବକୁ ବଲ୍‌ଶେଭିକ୍‌ପାର୍ଟି ହିଁ ରକ୍ଷା କରୁଛନ୍ତି ନଚେତ୍ ଅନ୍ୟାନ୍ୟ ସମସ୍ତେ

ଅସ୍ତ୍ରସମର୍ପଣ କରି ସାରିଛନ୍ତି । ତେଣୁ ବୁର୍ଜୁଆମାନେ ଏହି ଦଳକୁ ଧ୍ୱଂସ କରି ବିପ୍ଳବର ରଥଚକ୍ରକୁ ଓଲଟେଇ ପୁଞ୍ଜିବାଦକୁ ବଞ୍ଚାଇ ରଖିବାର ଚୂଡ଼ାନ୍ତ ଉଦ୍ୟମ କଲେ ।

ବୋଲଶେଭିକ୍‌ମାନଙ୍କ ଉପରେ ପ୍ରତି-ବିପ୍ଳବର ସ୍ରୋତ ବହିଗଲା । ପ୍ରଧାନ ପ୍ରଧାନ ସହରମାନଙ୍କରେ ବୁର୍ଜୁଆମାନେ ପ୍ରତି-ବିପ୍ଳବ ପାଇଁ ସଚେଷ୍ଟ ହୋଇ ରହିଲେ । ପେଟ୍ରୋଗ୍ରାଡ଼ ସହର, ସମ୍ମେଳନ ବସି ନିଷ୍ପତ୍ତି ନିଆଗଲା ଏବଂ ବୋଲଶେଭିକ୍‌ଙ୍କୁ ଡାକ ଦିଆଗଲା, “ଏହି ସାଂଘାତିକ ଦୁଃସମୟ ଅଶୁଭ ବେଳରେ ଶାନ୍ତିଶୀଳ ଋଷ ଭୂମିକୁ ଆଶା ଓ ବିଶ୍ୱାସ କରନ୍ତୁ । ଦେଶର ମୁକ୍ତିପାଇଁ ଏକ ଶକ୍ତିଶାଳୀ ସେନାବାହିନୀର ପୁନର୍ଗଠନ ସହ ଋଷ ଦେଶର ଉଦ୍ୟମରେ ଭଗବାନ ସହାୟ ହୁଅନ୍ତୁ ।”

କାଉନ୍‌ସିଲ୍ ଅଫ୍ ଷ୍ଟେଟ୍‌ର ଅଧିବେଶନବେଳକୁ ବୋଲଶେଭିକ୍ ଓ ବୁର୍ଜୁଆଙ୍କର ଏହି ଦୁଇ ଦଳଙ୍କୁ ଶକ୍ତି ପରୀକ୍ଷା କରିବାର ସ୍ଥିର ହେଲା । କାଉନ୍‌ସିଲ୍ ଅଫ୍ ଷ୍ଟେଟ୍‌ରେ ବଡ଼ ବଡ଼ ଦଳରୁ ପ୍ରତିନିଧି ଯାଉଥିଲେ । ବଲ୍‌ଶେଭିକ୍‌ମାନେ ଏହି କାଉନ୍‌ସିଲ୍ ଅଫ୍ ଷ୍ଟେଟ୍ ଭଳି ପ୍ରତିକ୍ରିୟାଶୀଳ ଅନୁଷ୍ଠାନକୁ ବର୍ଜନ କରିବାକୁ ସ୍ଥିର କରି ପେଟ୍ରୋଗ୍ରାଡ଼ରେ ଜନସାଧାରଣଙ୍କ ସମାବେଶର ଆୟୋଜନ କଲେ ।

ଅଗଷ୍ଟ ୨୭ ତାରିଖ ଦିନ ବିପ୍ଳବର ୬ମାସ ପୂର୍ତ୍ତି ଯାଉଥାଏ । ବୁର୍ଜୁଆମାନେ ଭାବୁଥିଲେ ଯେ, ସେହି ଦିନ କାହିଁକି ବଲଶେଭିକ୍‌ମାନେ ବିଦ୍ରୋହ, ହିଂସା ଓ ଲୁଣ୍ଠନ ସହ, ଶୋଭାଯାତ୍ରା କରିବେ ଏବଂ କର୍ଣ୍ଣିଲୋଭ ଏହାର ସୁଯୋଗ ନେଇ ବିପ୍ଳବକୁ ଚୂରମାର କରିଦେବେ । ଯଦି ସେମାନେ ସତ୍ତ୍ୱ, ଶୋଭାଯାତ୍ରା ନ କରନ୍ତି ତେବେ ବୋଲଶେଭିକ୍‌ଙ୍କ ତରଫରୁ ଅଶାନ୍ତି ଉଠିଲା ବୋଲି ଜଣେ ସେନାପତି ତାଙ୍କର ଲୋକଙ୍କ ମାଧ୍ୟମରେ ଦେଇ ଏକ ନକଲି ଆନ୍ଦୋଳନ ଆରମ୍ଭ କରିବେ ଏବଂ ତାହାକୁ ବଲ୍‌ଶେଭିକ୍ ଆନ୍ଦୋଳନ ବୋଲି ପ୍ରଚାର କରି ସହରର ଓ ବଲଶେଭିକ-ମାନଙ୍କ ଉପରେ ଆକ୍ରମଣ ଆରମ୍ଭ କରାଯିବ ।

Digitized by srujan ka@gmail.com

ଏହି ପ୍ରତି-ବିପ୍ଳବ ଉଦ୍ୟୁକ୍ତ ହେବ ଏକଥା କୋରନିଲଭ ଧରି ନେଇଥିଲେ ଏବଂ ନିଜେ ପ୍ରଧାନମନ୍ତ୍ରୀ ରହିବାକୁ ଏକ ମନ୍ତ୍ରୀମଣ୍ଡଳର ତାଲିକା ବାନ୍ଧି ସାରିଥିଲେ । ମିଳିତ ସରକାରରୁ ଅବଶ୍ୟ କେରେନସ୍କିଙ୍କ ନାମ କୋରନିଲଭଙ୍କ ତାଲିକାରେ ଥାଏ ।

ବୁର୍ଜୁଆମାନେ କୋରନିଲଭଙ୍କୁ ନିଜର ତ୍ରାଣକର୍ତ୍ତା ଭାବି ଧନ ମନ ପ୍ରାଣ ଲଗାଇ ପ୍ରତି-ବିପ୍ଳବର ଆୟୋଜନରେ ଲାଗିଲେ । ସୂରଜଭ ନାମକ ଜଣେ କୋଟିପତିଙ୍କ ସ୍ତ୍ରୀ କୋରନିଲଭ୍‌ଙ୍କ ପାଦତଳେ ପଡ଼ି ମଜଦୁର ଆନ୍ଦୋଳନକୁ ଧ୍ୱଂସ କରିବାଲାଗି କାକୁତି ମିନତି କଲେ ।

ପ୍ରତି-ବିପ୍ଳବର ଏ ସୂଚନା ଲେନିନ ଓ ବଲ୍‌ଶେଭିକମାନେ ଆଗରୁ ପାଇ ସାରିଥିଲେ । ସରକାର ମଧ୍ୟ ଏଥିରେ ଷଡ଼ଯନ୍ତ୍ର ହେଉଛି ବୋଲି ଜାଣି ଭିତରେ ସଂପୃକ୍ତ ଥିଲା ।

ଋଷ ବିପ୍ଳବର ମଧ୍ୟ ଏକ ଘଡ଼ିସନ୍ଧି ଅବସ୍ଥା—ଏକ ଚରମ ପରୀକ୍ଷା । କିଏ ଜିଣିବ, ଋଷର ବିପ୍ଳବୀ ଜନତା—ନା ରକ୍ତଶୋଷକ ବୁର୍ଜୁଆଦଳ ? ଏକତ୍ରିତହେଲେ ବୀର ମଜଦୁର, ବୀର କୃଷୀ ବଲ୍‌ଶେଭିକ ପାର୍ଟିର ନେତୃତ୍ୱ ମାନି ପ୍ରତି-ବିପ୍ଳବକୁ ଧ୍ୱଂସ କରି ପାରିବେ କି ନା ଏହି ହେଲା ପ୍ରଶ୍ନ । ତାର ଉତ୍ତର ଦେବ ଶ୍ରମିକ ଶ୍ରେଣୀ ।

ଅଗଷ୍ଟ ୨୭ ତାରିଖ ରାତିରେ ବଲ୍‌ଶେଭିକ ପାର୍ଟିର ପେଟ୍ରୋଗ୍ରାଡ଼ କମିଟି ଚରମ ପରୀକ୍ଷା ଲାଗି ସଜବାଜ ହୋଇଗଲେ । ରାତିସାରା କୌଣସି ପାର୍ଟି ସଭ୍ୟ ନ ଶୋଇ କର୍ତ୍ତବ୍ୟ କାମରେ ଲାଗିଲେ । ବକ୍ତାମାନଙ୍କୁ ବଘ ଯାଇ ବୃତ୍ତଅନ୍ତେ ପଠାଇ ଦିଆଗଲା । ମଜଦୁର ଓ ସୈନ୍ୟମାନଙ୍କୁ ଷଡ଼ଯନ୍ତ୍ରର ପ୍ରତିରୋଧ କରିବାକୁ ଡାକ ଦିଆଗଲା । ଫଳରେ କେବଳ ପେଟ୍ରୋଗ୍ରାଡ଼ରେ ନୁହେଁ, ମସ୍କୋ ଏବଂ ପ୍ରଦେଶମାନଙ୍କରେ ମଜଦୁର, କୃଷୀ ଓ ସୈନ୍ୟମାନେ କୋରନିଲଭଙ୍କ ପ୍ରତିରୋଧ ଲାଗି ନିଜ ହାତିଆରରେ

Digitized by srujan ka@gmail.com

ଜାଗ ଦେଲେ । କୋର୍ନିଲଭ୍ ଯେଉଁ ସୈନ୍ୟବାହିନୀ ଆଣିଥିଲେ ତା'ର ମଧ୍ୟରେ ଏଥି ପୂର୍ବ ଅନୈକ୍ୟ ଦେଖାଦେଇଛି । ବୋଲ୍‌ସେଭିକ୍ ଗୁପ୍ତଚର କୋରନିଲଭ୍‌ଙ୍କୁ ନେତୃତ୍ୱ ଲାଗି ଲାଞ୍ଛନା ଉଠାଇଦେଲେ । ଫଳରେ କୋର୍ନିଲଭ୍‌ଙ୍କ ସୈନ୍ୟବାହିନୀ ଭିତରେ ବିଦ୍ରୋହ ଉପସ୍ଥିତ ହେଲା । କୋର୍ନିଲଭ୍ ଯେଉଁ ‘ବନ୍ୟ-ବାହିନୀ’ ନାମକ ମୁସଲମାନ ସେନାଙ୍କୁ ଆଣିଥିଲେ, ବୋଲ୍‌ସେଭିକ୍ ନେତା କିରଭ୍‌ଙ୍କ ପରାମର୍ଶରେ କସ୍ମିରୀ ମୁସଲମାନଙ୍କ ଅଞ୍ଚଳକୁ ଯୋଗିଏ ପଠାଇ ଦଳ ଗଲ ସେମାନଙ୍କୁ ବିପ୍ଳବର ପକ୍ଷପାତୀ କରିଦେଲେ ।

କୋର୍ନିଲଭ୍‌ଙ୍କ ଷଡ଼ଯନ୍ତ୍ର ବିଫଳ ହେଲା । ବୁର୍ଜୁଆ ପ୍ରତି-ବିପ୍ଳବ କୃତକାର୍ଯ୍ୟ ହୋଇ ପାରିଲା ନାହିଁ । ଋଷ ମଜଦୁର ଶ୍ରେଣୀ ଏହି ଅଗ୍ନି ପରୀକ୍ଷାରେ ବଡ଼ମ୍ ଖାଣ୍ଟି ଭଳି ଉଧୁରି ଆସିଲେ ।

ସରକାର କୋରନିଲଭ୍‌ଙ୍କୁ ବରଖାସ୍ତ କଲେ ସତ; ମାତ୍ର କୋରନିଲଭ୍‌ଙ୍କୁ ପ୍ରଧାନମନ୍ତ୍ରୀ କରିବା ଲାଗି ଯେଉଁ ସୈନ୍ୟାଧ୍ୟକ୍ଷ ଅଲେକ୍ସିୟେଭ୍ ମନ୍ତ୍ରଣା ଦେଇଥିଲେ ସରକାର ତାଙ୍କୁହିଁ ଋଷର ପ୍ରଧାନ ସେନାପତିରୂପେ ବାଛିଲେ ।

କୋରନିଲଭ୍ ଷଡ଼ଯନ୍ତ୍ର ବିଫଳ ହୋଇଯିବାରୁ ପୁଞ୍ଜିପତିମାନେ ଅନ୍ୟ ଉପାୟରେ ବିପ୍ଳବକୁ ଧ୍ୱଂସ କରିବାର ବାଟ ଧରିଲେ । ଋଷ ଅର୍ଥନୀତିକୁ ଅଚଳ କରି ଦୁର୍ଭିକ୍ଷ ଓ ଖାଦ୍ୟାଭାବ ଭିତରେ ବିପ୍ଳବର କୁଧାରକୁ ଭାଙ୍ଗିବାର ଉଦ୍ୟମ ହେଲା । ମାତ୍ର ଏ ସବୁ ମଧ୍ୟ ଅସଫଳ ହେଲା ।

Digitized by srujan ka@gmail.com

# ଅକ୍ଟୋବର ବିପ୍ଳବ

ଫେବୃଆରୀ ବିପ୍ଳବ ଦିନଠାରୁ ଅକ୍ଟୋବର ବିପ୍ଳବ ଯାଏଁ ବିଭିନ୍ନ ଆନ୍ଦୋଳନ ଚାଲିଛି । ବିଭିନ୍ନ ସ୍ୱାର୍ଥ, ବିଭିନ୍ନ ଦଳ, ବିଭିନ୍ନ ଶ୍ରେଣୀର ଘାତ ପ୍ରତିଘାତ ଫଳରେ ଗୋଟିଏ କଥା ସ୍ପଷ୍ଟ ହୋଇ ଆସୁଥିଲା । ଘାତ ପ୍ରତିଘାତର ମୂର୍ତ୍ତିମନ୍ତ ବା ସଂଘାତ ଅଥବା ସମନ୍ୱୟ ହେଲା ଅକ୍ଟୋବର ବିପ୍ଳବ ଦିନ । ଦିନଦିନକର ଘଟଣା, ମୁହୂର୍ତ୍ତି ମୁହୂର୍ତ୍ତକର ଘଟଣା ଅକ୍ଟୋବର ବିପ୍ଳବ ଲାଗି ବାଟ କଢ଼େଇଲା । ବଲସେଭିକ ପାର୍ଟି ଏକ ସଂଖ୍ୟାନ୍ୟୂନ ପାର୍ଟି ଥାଇ, ବେଆଇନ ପାର୍ଟି ଥାଇ ନିଜର ବୈପ୍ଳବିକ କାର୍ଯ୍ୟପଦ୍ଧତି, ନିଜର ବଳିଷ୍ଠ ନେତୃତ୍ୱ ବଳରେ ବିପ୍ଳବର ଅଗ୍ରଗାମୀ ନେତା ବୋଲି ସ୍ୱୀକୃତ ହେଲା ।

ଏପ୍ରିଲ, ଜୁନ, ଜୁଲାଇ ପ୍ରଭୃତି ବିଭିନ୍ନ ମାସ, ବିଭିନ୍ନ ଦିନ ଏମିତିକି ବିଭିନ୍ନ ମୁହୂର୍ତ୍ତରେ ରୁଷ ମଜଦୁର, ରୁଷ କୃଷୀ ନିଜ ଲଢ଼େଇରେ ଯେଉଁ ଶିକ୍ଷା ଲାଭ କରିଥିଲା ତାହା ଯଥେଷ୍ଟ ହୋଇ ନ ଥିଲା । ବେଳେବେଳେ ସେ ବଲସେଭିକ ପାର୍ଟିର ନେତୃତ୍ୱ ମାନିଯାଏ; ଅପର ମୁହୂର୍ତ୍ତରେ ପୁଣି ସରକାର, ମେନସେଭିକ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରୀମାନଙ୍କ ଉପରେ ଅକାରଣ ବିଶ୍ୱାସ ସ୍ଥାପନ କରେ । ଅସୀମ ଧୈର୍ଯ୍ୟ, ନିଜ ବୈପ୍ଳବିକ କାର୍ଯ୍ୟପ୍ରଣାଳୀରେ ଅଖଣ୍ଡ ବିଶ୍ୱାସ ଓ ଅନୁରକ୍ତ ବର୍ଗ ବଲସେଭିକ ପାର୍ଟି କାମ କରି ଚାଲିଥାଏ ।

Digitized by srujan ka@gmail.com

କୋରନିଲଭ୍ ଷଡ଼ଯନ୍ତ୍ର ସବୁ ଭ୍ରମ ଭାଙ୍ଗିଦେଲା । କୋରନିଲଭ୍ ଷଡ଼ଯନ୍ତ୍ରକୁ ବଲସେଭିକ୍‌ଙ୍କ ଆହ୍ୱାନରେ ପଣ୍ଡ କରି ମଜଦୁର ଶ୍ରେଣୀର ମଧ୍ୟ ଆତ୍ମବିଶ୍ୱାସ ବଢ଼ିଗଲା । ଏଣିକି ଲୋଡ଼ା ପ୍ରତ୍ୟକ୍ଷ ସଶସ୍ତ୍ର ବିପ୍ଳବର ଉଦ୍ଯୋଗ ଆୟୋଜନ ।

ପ୍ରଥମେ ଏହାର ସୂଚନା ମିଳିଲା ସୈନ୍ୟବାହିନୀରେ । କୋରନିଲଭ୍ ବିଦ୍ରୋହ ପରେ ସାଧାରଣ ସୈନ୍ୟ ଓ ଅଫିସରଙ୍କ ଭିତରେ ମନାନ୍ତର ଅତି ଗୁରୁତର ରୂପ ଧରିଲା । ସୈନ୍ୟବାହିନୀରେ ଶ୍ରେଣୀ ସଂଘର୍ଷ ଏକ ନୂଆ ସ୍ତରରେ ପହଞ୍ଚିଲା ।

ସୋସିଆଲିଷ୍ଟ ରିଭଲ୍ୟୁସନାରି ଓ ମେନସେଭିକ୍‌ମାନଙ୍କର ବିଶ୍ୱାସ-ଘାତକତା ଫନ୍ଦି ଏବେ ସୈନ୍ୟବାହିନୀ ବୁଝିପାରିଲା । କୋରନିଲଭ୍‌ଙ୍କ ସଙ୍ଗେ କୌଣସି ଅଫିସରର ସମ୍ପର୍କ ଥିବାର ଜଣାପଡିଲେ ସୈନ୍ୟମାନେ ତାକୁ ବାହାର କରିଦେବାକୁ ଆରମ୍ଭ କଲେ । ସେନାଧ୍ୟକ୍ଷମାନଙ୍କୁ ଜେରାକରାଯାଇ ପଚରା ହେଲା ଯେ ସେମାନେ କୋରନିଲଭ୍‌ଙ୍କ ସଙ୍ଗେ ସମ୍ପୃକ୍ତ ଥିଲେ କି ନା ? ଯଦି କେହି ଏହି ଦୋଷରେ ଦୋଷୀ ସାବ୍ୟସ୍ତ ହେଲା ସେହି ଅଫିସର ବା ସେନାପତିଠାରୁ ଅସ୍ତ୍ରଶସ୍ତ୍ର କାଢ଼ି ନିଆଗଲା । ଏପରିକି ସେମାନଙ୍କୁ ଗୁଳି କରି ହତ୍ୟା କରାଗଲା । ଭାଇବର୍ଗରେ ଏଗାର ଜଣ ଅଫିସରଙ୍କୁ ଏହି ଦୋଷରେ ମୃତ୍ୟୁ ଦଣ୍ଡ ଦିଆଗଲା ।

ସୈନ୍ୟମାନେ ପ୍ରତ୍ୟାଗାମୀ, ଦୁର୍ନୀତି ଓ ଲାଞ୍ଚଖୋର ଅଫିସର ତଥା ସେନାପତିଙ୍କୁ ସମୁଚିତ ଦଣ୍ଡ ଦେଇ ବିପ୍ଳବକୁ ରକ୍ଷା କରିବାଲାଗି ଏକ ନୂଆ ଚେତନା ଓ ନୂଆ ପ୍ରେରଣା ନେଇ ଅଗ୍ରସର ହେଲେ ।

ସୈନ୍ୟବାହିନୀ ସଙ୍ଗେ ନୌବାହିନୀର ସହଯୋଗ ଏକ ଅପୂର୍ବ ମିଳନରେ ପରିଣତ ହେଲା ।

ହେଲସିଙ୍ଗ୍‌ଫୋର ବନ୍ଦରର ନୌବାହିନୀ ପ୍ରଥମେ ଅସ୍ଥାୟୀ ସରକାରକୁ ଉଚ୍ଛେଦ କରିବାଲାଗି ଡାକ ଦେଲେ । ଏଥିଲାଗି ସଶସ୍ତ୍ର ବିପ୍ଳବ ଯେ ଲୋଡ଼ା

Digitized by srujan ka@gmail.com

ଏହି କଥା ସେମାନଙ୍କଠାରୁ ଅତି ଶୀଘ୍ର ସ୍ଥଳରେ ବ୍ୟାପିଗଲା । ଅକ୍ଟୋବର ୩ ତାରିଖରେ ବଲ୍‌ଟିକ ନୌବାହିନୀ ସାଧାରଣ ସୈନ୍ୟ ତଥା ନୌସୈନ୍ୟମାନଙ୍କୁ ବିପ୍ଳବ ଲାଗି ପ୍ରାଣଦେବାକୁ ଆହ୍ୱାନ କଲା ।

ବଲ୍‌ଟିକ ବାହିନୀ ଏହି ଆହ୍ୱାନର ପ୍ରତ୍ୟୁତ୍ତର ଦେଇ ଲେଖିଲେ, "ଆପଣଙ୍କର ଏ ଆହ୍ୱାନ ସଙ୍ଗେ ଆମେ ସହଯୋଗ କରୁଛୁ । ଆମ୍ଭେମାନେ ଆପଣମାନଙ୍କ ସାଙ୍ଗରେ ବ୍ୟାରିକେଡ୍ ପଛେ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛୁଁ ।"

ରୁମାନିଆ ସୀମାରେ ଥିବା ସୈନ୍ୟବାହିନୀ ଲେଖିଲେ, "ସାଥିଗଣ, ଆପଣମାନଙ୍କ ଉପରେ ବହୁତ କଥା ନିର୍ଭର କରେ । ଆପଣମାନଙ୍କ ସାଙ୍ଗରେ ଆମେ ଅଛୁଁ ।"

ଗୃହଅବେ ସୈନ୍ୟ ଓ ନୌବାହିନୀ ଭିତରେ ଏହି ଉନ୍ମାଦନା ଖେଳୁଥିବାବେଳେ ସେବାସ୍ତୋପୋଲ୍ ଓ ସୋଭ୍‌ଏଠ୍‌କୁ ସୋସିଅଲିଷ୍ଟ ରିଭଲ୍ୟୁସନାରିମାନେ ମାତବ୍ବରୀ କରୁଥାନ୍ତି । ବଲ୍‌ସେଭିକ ପାର୍ଟି ସେଠାରେ ବହୁତ ଦୁର୍ବଳ ଥାଏ । ସୋସିଅଲିଷ୍ଟ ରିଭଲ୍ୟୁସନାରିଙ୍କ ସଭ୍ୟ ସଂଖ୍ୟା ସେଠାରେ କୋଡ଼ିଏ ହଜାର ଥିଲାବେଳେ ବଲ୍‌ସେଭିକ ଥିଲେ ମୋଟେ ୧୫୦ । ଏଣୁ ଦୁଇଜଣ ବଲ୍‌ସେଭିକ୍ ପାର୍ଟି ସଂଗଠକ ଅକ୍ଟୋବର ମାସ ମଧ୍ୟଭାଗରେ ସେଠାକୁ ପଠାଗଲେ ।

ବଲ୍‌ସେଭିକ ପାର୍ଟିର ଆନ୍ଦୋଳନକାରୀମାନଙ୍କ ସୈନ୍ୟବାହିନୀ ନିକଟକୁ ଯିବାରେ କଠୋର ଆଦେଶ ଜାରି ଥାଏ । ତେଣୁ ବଲ୍‌ସେଭିକ ପାର୍ଟି ପକ୍ଷରେ କାମ କରିବା ଅତି କଷ୍ଟସାଧ୍ୟ ହୋଇ ପଡୁଥାଏ । ତଥାପି ଲୁଚିଛପା ଭାବରେ ସହସ୍ର ସହସ୍ର ପତ୍ରପତ୍ରିକା ଓ ଖବରକାଗଜ ସୈନ୍ୟବାହିନୀ ଭିତରକୁ ଯାଉଥାଏ । କାରଣ ଯାହା ଶାସନ କଳଟିକୁ ଯେ ବଳେ ଯମଘର କାମ କରୁଥିଲା ସେହି ସୈନ୍ୟବାହିନୀ ହିଁ ଶାସନର ବିପ୍ଳବର ଅଗ୍ରଦୂତ ହୋଇ ଠିଆ ହେଲା । ବଲ୍‌ସେଭିକ୍ ପାର୍ଟିର ଶାଖା ପ୍ରଶାଖା ସବୁ ସୈନ୍ୟ ଓ ନୌବାହିନୀ ଭିତରେ ବ୍ୟାପିବାରେ ଲାଗିଲେ ।

Digitized by srujan ka@gmail.com

ଆଗରୁ ସେନାପତିଙ୍କ ମାରିବା ପ୍ରସ୍ତାବ ଦାମ ସାମରିକ ଗୃହୀତ ହୋଇଥିଲା । ମାତ୍ର ସୈନ୍ୟବାହିନୀ ଏବେ ସେହି ଚେତନା ଶାଳ ସେନାପତିଙ୍କୁ ଦଣ୍ଡ ଦେଲା, ବଡ଼ ବଡ଼ ଅଫିସରଙ୍କୁ ବାହାର କରିଦେଲା ବା ଅତି ପ୍ରତିକ୍ରିୟାଶୀଳ ସେନାପତିଙ୍କ ହତ୍ୟା କଲା ତାହା ଅଜ ଏକ ଦୃଷ୍ଟିରୁ କହିଗଲା । ଦଣ୍ଡିତ ବା ବରଖାସ୍ତ ହୋଇଥିବା ଅଫିସର ବା ସେନାପତିଙ୍କ ବଦଳରେ ସାଧାରଣ ସୈନ୍ୟ ନିଜ ଭୋଟବଳରେ ନୂତନ ସେନାପତି, ନୂତନ ଅଫିସର ବାଛିଲେ । ଏହି ଗଣତାନ୍ତ୍ରିକ ଚେତନା, ଏହି ବୈପ୍ଳବିକ ଚେତନାର ପ୍ରସାର ଫଳରେ ସୈନ୍ୟ ଓ ନୌବାହିନୀ ସେ ବିପ୍ଳବର ପୂର୍ଣ୍ଣ ସମର୍ଥକ ତାହା ପ୍ରମାଣିତ ହେଲା ।

ଲେନିନ୍ ଓ ବଲସେଭିକମାନଙ୍କର ବିପ୍ଳବର ଏ ଆୟୋଜନବେଳେ ପ୍ରତି-ବିପ୍ଳବୀମାନେ ଆଖି ବୁଜି ବସି ନ ଥିଲେ । ସୈନ୍ୟବାହିନୀ ଭିତରେ ସେମାନେ ମଧ୍ୟ ପ୍ରତି-ବିପ୍ଳବ ଲାଗି ଆୟୋଜନ କଲେ । ଅକ୍ଟୋବର ୯ ତାରିଖରେ ମେନସେଭିକ ମନ୍ତ୍ରୀ ନିଜ ନିଜର ଅଞ୍ଚଳରେ ପ୍ରତିକ୍ରିୟା-ପନ୍ଥୀଙ୍କୁ ନେଇ ବିପ୍ଳବକୁ ଦବାଇବା ଲାଗି କମିଟିମାନ ଗଢ଼ିବାକୁ ଆଦେଶ ଦେଲେ । ଅକ୍ଟୋବର ୧୧ ତାରିଖ ଦିନ ଯୁଦ୍ଧମନ୍ତ୍ରୀ 'ଅରାଜକତା ବିରୁଦ୍ଧରେ ଲଢ଼ିବା ଲାଗି' ନୂତନ ସୈନ୍ୟବାହିନୀ ଗଢ଼ିବାକୁ ଆଦେଶ ଦେଲେ ।

ପୁଞ୍ଜିପତି ବୁର୍ଜୁଆଙ୍କର ସବୁ ଉଦ୍ୟମକୁ ମେନସେଭିକ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରିମାନେ ପୂର୍ଣ୍ଣପ୍ରାଣରେ ସମର୍ଥନ କଲେ । ଅବଶ୍ୟ ବୁର୍ଜୁଆମାନେ ଯେଉଁ ଲଙ୍ଗଳା ଭାଷାରେ ବିପ୍ଳବର ବିରୋଧ କରନ୍ତି ବା ଖୋଲାଖୋଲି ଭାବେ ଯୁଦ୍ଧର ଆୟୋଜନ କରନ୍ତି ମେନସେଭିକ ବା ସୋସିଆଲିଷ୍ଟ ରିଭୋଲ୍ୟୁସନାରିମାନେ ସେପରି କରନ୍ତି ନାହିଁ । କେତେ ଗଣତାନ୍ତ୍ରିକ, କେତେ କୃଷି ମଜଦୁର ସପକ୍ଷ, କେତେ ସାମ୍ୟବାଦୀ ଏହି କଥା ସେପରି ସବୁବେଳେ ପ୍ରମାଣିତ ହୋଇଥିବ ସେଥିଲାଗି ନିଜର ଆଚରଣକୁ ନୂଆ ପ୍ରକାର ଭାଷାରେ ଘୋଡ଼ାଇ ରଖନ୍ତି ଏହା ସବୁବେଳେ କେନ୍ଦ୍ରମଧ୍ୟପନ୍ଥୀ ଦଳମାନଙ୍କର ଲକ୍ଷଣ । ତେଣୁ ମେନସେଭିକ ପ୍ରସ୍ତାବ ପ୍ରାକ୍-ପାର୍ଲିଅମେଣ୍ଟ

Digitized by srujan ka@gmail.com

( Pre-Parliament ) ଡକାଇବା ସ୍ଥିର କଲେ । ସେଠାରେ ବିପ୍ଳବକୁ 'ନ୍ୟାସି' ଆଖ୍ୟା ଦେଇ ତାକୁ ଦବାଇବା ଲାଗି ପ୍ରସ୍ତାବ ଆସିବ ବୋଲି ଜଣାଇଦେଲେ । ବଲ୍‌ଶେଭିକମାନେ ବିପ୍ଳବକୁ ଧ୍ୱଂସ କରିବାର ଏହି ଷଡ଼ଯନ୍ତ୍ରକୁ ଜୋରରେ ପ୍ରଚାର କରି ପ୍ରାକ୍-ପାର୍ଲିଆମେଣ୍ଟକୁ ବର୍ଜନ କଲେ ।

ମେନ୍‌ଶେଭିକ୍ ଓ ସୋସିଆଲିଷ୍ଟ ରିଭଲ୍ୟୁସନାରିଙ୍କ ହାତରୁ ନିଜକୁ ଓ ତା' ଫଳରେ ବିପ୍ଳବକୁ ରକ୍ଷା କରିବା ପାଇଁ ଲେନିନ୍ ଫିନ୍‌ଲାଣ୍ଡରେ ଆଶ୍ରୟ ନେଇଥିଲେ । ସେହିଠାରେ ଥାଇ ସେ ପ୍ରତ୍ୟେକ ଦିନ ବିପ୍ଳବର ଗତିରେ ଲକ୍ଷ୍ୟ ରଖିଥିଲେ । ଫିନ୍‌ଲାଣ୍ଡରେ ଥାଇ ସେ ପାର୍ଟିର କେନ୍ଦ୍ର କମିଟିକୁ ଯେଉଁ ନିର୍ଦ୍ଦେଶାବଳୀ ଓ ଚିଠିମାନ ଲେଖିଥିଲେ ତାହା କେବଳ ରୁଷ ନୁହେଁ, ବିଶ୍ୱବିପ୍ଳବ ଇତିହାସରେ ଏକ ଅଭିନବ ଅଧ୍ୟାୟ ସୃଷ୍ଟି କରିଛି ।

ଯେତେବେଳେ ବିପ୍ଳବ ଆସନ୍ନ ହୋଇ ଉଠିଲା, ଲେନିନ୍ ଫିନ୍‌ଲାଣ୍ଡରୁ ପୁଣି ଅକ୍ଟୋବର ୭ ତାରିଖ ଦିନ ପେଟ୍ରୋଗ୍ରାଡ଼ରେ ପହଞ୍ଚିଲେ । ପାର୍ଟିର କେନ୍ଦ୍ର କମିଟି ତାପରେ ଯେ ଅକ୍ଟୋବର ତା ୧୦ ତାରିଖ ଦିନ ସଶସ୍ତ୍ର ବିପ୍ଳବ ଅଳ୍ପଦିନ ଭିତରେ ହେବ ବୋଲି ସ୍ଥିର କଲେ । କେନ୍ଦ୍ର କମିଟିର ଏହି ନିଷ୍ପତ୍ତି ବିରୁଦ୍ଧରେ ମତ ଦେଇ କାମେନେଭ୍ ଓ ଜିନୋଭିଭ୍ ବୁର୍ଜୁଆଙ୍କ ଖବର କାଗଜରେ ଲେଖା ପ୍ରକାଶ କଲେ । ଲେନିନ୍ ଏମାନଙ୍କୁ ବିଶ୍ୱାସଘାତକ କହିଲେ ଏବଂ କେନ୍ଦ୍ର କମିଟି ସେମାନଙ୍କୁ ପାର୍ଟିରୁ ବାହାର କରିଦେଲେ । ଏତେ ଦିନଯାଏ ଟ୍ରଟ୍‌ସ୍କି ବଲ୍‌ଶେଭିକ ପାର୍ଟି ଓ ଲେନିନଙ୍କର ବିରୋଧ କରୁଥିଲେ । ୧୯୧୭ ଅଗଷ୍ଟ ମାସରେ ସେ ବଲ୍‌ଶେଭିକ ପାର୍ଟିରେ ଯୋଗ ଦେଲେ । ସେ କେନ୍ଦ୍ର କମିଟିର ଏହି ନିଷ୍ପତ୍ତିକୁ ପ୍ରତ୍ୟକ୍ଷ ବିରୋଧ ନ କଲେହେଁ ପରୋକ୍ଷ ବିରୋଧ କରୁଥିଲେ । ସଶସ୍ତ୍ର ବିପ୍ଳବ ପାଇଁ ଲେନିନ୍ ଓ ଷ୍ଟାଲିନଙ୍କ ନେତୃତ୍ୱରେ କେନ୍ଦ୍ର କମିଟି ଯେଉଁ ସମୟ ନିରୂପଣ କରିଥିଲେ ତାହା ଠିକ୍ ସମୟ ନୁହେଁ ବୋଲି ଟ୍ରଟ୍‌ସ୍କି ଧରି ବସିଲେ । ଘଟି ଚକ୍ରର ଏହି ସାମାନ୍ୟ କେତେଜଣ ଦୁର୍ବଳଚିତ୍ତଙ୍କ ବିଶ୍ୱାସଘାତକତାକୁ ଅପେକ୍ଷା ନ କରି ବଲ୍‌ଶେଭିକଦଳ ନିରୂପିତ ଦିନ ଲାଗି ଅନ୍ତିମ ଆୟୋଜନରେ ଲାଗିଗଲେ ।

Digitized by srujan ka@gmail.com

ଭୋରୋଶିଲଭ୍, ମୋଲଟୋଭ୍, ଜେର୍ଜିନସ୍କି ଓରଜନିକିଜ, ବୁବନୋଭ୍, କାଗାନୋଭିଚ୍, କୁଇବିଶେଭ୍, ଫ୍ରୁଞ୍ଜେ, ୟାରୋସ୍ଲାଭସ୍କି ଏବଂ ଅନ୍ୟାନ୍ୟ ବିଭିନ୍ନ ସ୍ଥାନରେ ସଶସ୍ତ୍ର ବିପ୍ଳବକୁ ପରିଚାଳନା କରିବାର ଭାର ଅର୍ପଣ କରାଗଲା । କେନ୍ଦ୍ରକମିଟିର ନିର୍ଦ୍ଦେଶରେ ପେଟ୍ରୋଗ୍ରାଡ୍ ଲାଗି ଏକ "ବୈପ୍ଳବିକ ସେନା-କମିଟି" ଗଢ଼ାଗଲା । ତାହାହିଁ ସଶସ୍ତ୍ର ବିପ୍ଳବର ପ୍ରଧାନ ଶିବିର ହେଲା ।

ଅକ୍ଟୋବର୍ ୧୬ ତାରିଖରେ ପୁଣି କେନ୍ଦ୍ରକମିଟିର ପରିବର୍ଦ୍ଧିତ ବୈଠକ ବସି ଏକ ପାର୍ଟିକେନ୍ଦ୍ର ନିର୍ବାଚିତ ହେଲା । ତାହାର ନେତା ନିଯୁକ୍ତହେଲେ ଷ୍ଟାଲିନ୍ । ସେହି ପାର୍ଟିକେନ୍ଦ୍ର ଓ ଷ୍ଟାଲିନଙ୍କ ନେତୃତ୍ୱରେ ସଶସ୍ତ୍ର ବିପ୍ଳବର ପରିଚାଳନା ହେବ ବୋଲି ସ୍ଥିର ହେଲା ।

ଏହି ସମୟରେ ଅସ୍ଥାୟୀ ସରକାର ପେଟ୍ରୋଗ୍ରାଡରୁ ମସ୍କୋକୁ ରାଜଧାନୀ ଉଠାଇ ନେବାର ଘୋଷଣା କଲେ । ଅର୍ଥାତ୍ ବିଦେଶୀ ସୈନ୍ୟବାହିନୀକୁ ପେଟ୍ରୋଗ୍ରାଡ଼କୁ ସମର୍ପଣ କରି ବିପ୍ଳବକୁ ଧ୍ୱଂସ କରିବାକୁ ସ୍ଥିର କଲେ । ଏହି ମୁହୂର୍ତ୍ତରେ ବିପ୍ଳବୀ ନେତା ଲେନିନ ବିପ୍ଳବର ଉପଯୁକ୍ତ ଅବସ୍ଥା ଜାଣି ସଶସ୍ତ୍ର ବିପ୍ଳବ ଲାଗି ଦିନ ସ୍ଥିର କଲେ ।

ଅକ୍ଟୋବର ୨୦ ତାରିଖରେ ସୋଭିଏଟମାନଙ୍କର ଦ୍ୱିତୀୟ ଅଧିବେଶନ ବସିବାର ଥିଲା । ସେହି ଦିନ ବଲସେଭିକମାନେ ବିପ୍ଳବ କରିବେ ବୋଲି ଜାଣି ପ୍ରତି-ବିପ୍ଳବୀମାନେ ହଠାତ୍ ସେହି ଅଧିବେଶନକୁ ୨୫ ତାରିଖକୁ ଘୁଞ୍ଚାଇଦେଲେ ଓ ୧୯ ତାରିଖ ଦିନ ଲେନିନଙ୍କୁ ଗିରଫ କରିବାକୁ ପୂର୍ବ ପରିଯୋଜନା ବାହାର କରିଲେ ।

ବିପ୍ଳବ ଲାଗି ମଜଦୁର ଓ ସୈନ୍ୟବାହିନୀର ଏ ସବୁ ଆୟୋଜନ ହେଲେ ହେଁ ଜାରବାଦୀ ଓ ସରକାର, ଦଳ, ପୁଞ୍ଜିପତି, ଭୂଇଁଅଧିକାରୀମାନେ, ମେନ୍‌ସେଭିକ ଓ ସୋସିଆଲିଷ୍ଟ ରେଭଲ୍ୟୁସନାରୀ ପ୍ରଭୃତି ଦଳମାନେ ଜୀବନ ପଣ କରି ବିପ୍ଳବକୁ ଧ୍ୱଂସ କରିବାଲାଗି ଆୟୋଜନ କରୁଥାନ୍ତି ।

Digitized by srujan ka@gmail.com

ଠିକ୍ ଏତିକିବେଳେ ଟ୍ରଟ୍‌ସ୍କି ଏକ ସଭାରେ ସଶସ୍ତ୍ର ବିପ୍ଳବର ଦିନଟି ଘୋଷଣା କରିଦେଲେ । ଏପରି ଘୋଷଣା କରିବାକୁ ପାର୍ଟି ନିଷେଧ କରିଥିଲା । ଶତ୍ରୁ ବିପ୍ଳବ ଦିବସ କଥା ଜାଣି ଆଗରୁ ତିଆରି ହୋଇ ରହିବ ଏପରି ସ୍ଥଳେ ଟ୍ରଟ୍‌ସ୍କିଙ୍କ ଘୋଷଣା ବଲ୍‌ଶେଭିକ ପାର୍ଟିକୁ ବଡ଼ ଅସୁବିଧା ଅବସ୍ଥାରେ ପକାଇଦେଲା । ପାର୍ଟି ସ୍ଥିର କଲା ଯେ ନିରୂପିତ ଦିବସ ପୂର୍ବରୁ ସଶସ୍ତ୍ର ଆକ୍ରମଣ ଆରମ୍ଭ କରିବାକୁ ହେବ ।

ଲେନିନ ପାର୍ଟିକୁ, ସାରା ରୁଷର ମଜଦୁର ଶ୍ରେଣୀକୁ, ସୈନ୍ୟ ଓ ନୌବାହିନୀକୁ ଚରମ ଆହ୍ୱାନ ଦେଲେ । ଲେନିନ୍ ନିଜ ପକ୍ଷର ଆୟୋଜନ ତଥା ପ୍ରତିପକ୍ଷର ଅବସ୍ଥା ତନ୍ନତିକୁ ଆଲୋଚନା କରି କହିଲେ, "୨୪ ତାରିଖ ଅତି ଚଞ୍ଚଳ ହୋଇଯିବ; ୨୬ ତାରିଖ ଅତି ଡେରି ହୋଇଯିବ; ତେଣୁ ଅପରୁ ୨୫ ତାରିଖ ଦିନହିଁ ସଶସ୍ତ୍ର ବିପ୍ଳବ କରିବାକୁ ହେବ ।"

ତଦନୁଯାୟୀ ପାର୍ଟିସଂଗଠନ ସଙ୍ଗଠିତ ହେଲା । ସୈନ୍ୟ ଓ ନୌବାହିନୀକୁ ଅକ୍ଟୋବର ୨୧ ତାରିଖ ଦିନ ପ୍ରତିନିଧିମାନେ ପଠାଗଲେ । କଳ କାରଖାନା, ମଜଦୁର ବସ୍ତି ସୈନ୍ୟ ଛାଉଣୀରେ ପରିଣତ ହେଲା । 'ଅଜରେର୍' ଓ 'ଜାରମ୍ୟା ସ୍ଲୋବୋଡ' ଯୁଦ୍ଧ ଜାହାଜମାନଙ୍କୁ ନିର୍ଦ୍ଦେଶମାନ ପଠାଗଲା ।

୨୫ ତାରିଖ ଦିନ ସୋଭିଏଟମାନଙ୍କର ଦ୍ୱିତୀୟ ଅଧିବେଶନ ବସିବାର କଥା । ୨୪ ତାରିଖଦିନ ସକାଳୁ କେରେନସ୍କି ସରକାର ବଲଶେଭିକପାର୍ଟି ଉପରେ ଆକ୍ରମଣ ଆରମ୍ଭ କରିଦେଲା । 'ରାବୋଚି ପୁଟ୍' (ମଜଦୁର-ପଥ) ନାମକ ବଲଶେଭିକ ଖବରକାଗଜର ଅଫିସକୁ କେରେନସ୍କିଙ୍କ ସୈନ୍ୟବାହିନୀ ଘେରାଉ କରିନେଲେ । ପାର୍ଟିର ଛାପାଖାନା ମଧ୍ୟ ଘେରାଉ ହେଲା ।

ଦିନ ୧୦ଟା ବେଳକୁ ଷ୍ଟାଲିନଙ୍କ ନେତୃତ୍ୱରେ ବିପ୍ଳବୀ ସୈନ୍ୟବାହିନୀ ଓ ରେଡ୍‌ଗାର୍ଡ କେରେନସ୍କି ସରକାରର ମଠର ବାହିନୀକୁ ପଛକୁ ହଟେଇ

Digitized by srujan ka@gmail.com

ପାର୍ଟିର ପ୍ରେସ ଓ ଖବରକାଗଜ ଅଫିସକୁ ଜଟିରହଲେ। ୧୧ଟା ବେଳକୁ 'ମଜଦୁର-ପଥ' ବାହାରିଲା ଏବଂ ସେଥିରେ ଡାକରା ଦିଆଗଲା ଯେ, 'ଅସ୍ଥାୟୀ ସରକାରକୁ ଭାଙ୍ଗିଦିଅ'।

ପେଟ୍ରୋଗ୍ରାଡ଼ର ସ୍ମୋଲନି ଥିଲା ବଲଶେଭିକ ପାର୍ଟିର କେନ୍ଦ୍ର। ବିପ୍ଳବୀ ସେନାବାହିନୀ ସେହିଠାରୁ ପ୍ରେରଣ ପରିଚାଳନା କରୁଥାନ୍ତି। ସ୍ମୋଲନିକୁ ବିପ୍ଳବୀର ସେନା ଓ ରେଡ଼ଗାର୍ଡ ମଧ୍ୟ ଜଗି ରହିଥାନ୍ତି।

ସଶସ୍ତ୍ର ବିପ୍ଳବ ଆରମ୍ଭ ହୋଇଗଲା।

ଅକ୍ଟୋବର ୨୪ ତାରିଖ ରାତିରେ ଲେନିନ ସ୍ମୋଲନିରେ ପହଞ୍ଚି ବିପ୍ଳବ ପରିଚାଳନାର ପ୍ରତ୍ୟକ୍ଷ ଭାର ନେଲେ। ରାତିସାରା ସ୍ମୋଲନିରେ ବିପ୍ଳବୀ ସେନାବାହିନୀ ଓ ରେଡ୍‌ଗାର୍ଡ ଆସି ହଜାର ହଜାର ସଂଖ୍ୟାରେ ପହଞ୍ଚୁଥାନ୍ତି।

ବଲଶେଭିକମାନେ ଏହି ସୈନ୍ୟ ଓ ରେଡ୍‌ଗାର୍ଡଙ୍କୁ ରାଜଧାନୀର କେନ୍ଦ୍ର ଓ ଶୀତ ପ୍ରାସାଦକୁ ଘେରାଉ କରିବାକୁ ପଠାଇଦେଲେ। ସୈନ୍ୟବାହିନୀ ଓ ରେଡ୍‌ଗାର୍ଡର ଦଳଗୁଡ଼ିକ ଏହି ଅଭିଯାନବେଳେ ପେଟ୍ରୋଗ୍ରାଡ଼ର ବିପ୍ଳବୀ ମଜଦୁର ଏକ ହୋଇ ବିପ୍ଳବପକ୍ଷରେ ଯୋଗ ଦେଲେ। 'ଅରୋରା' ଜାହାଜରୁ ତୋପକମାଣ ଶୀତପ୍ରାସାଦକୁ ମୁହାଁଇ ଗୁଳି ବର୍ଷଣ କଲା।

୨୫ ତାରିଖ ସକାଳ—ଅଜ ରାତ୍ରି ସାମ୍ୟବାଦୀ ବିପ୍ଳବର ପୁଣ୍ୟାହ। ୨୫ ତାରିଖ ଦିନ ୧୦ଟା ପୂର୍ବରୁ ସେନାବାହିନୀ ଓ ରେଡ୍‌ଗାର୍ଡ ସବୁ ସାମରିକ ଘାଟିମାନ ଦଖଲ କରିଗଲେ। କେରେନ୍‌ସ୍କି ମାଦ୍ରପି ବେଶରେ ପଳାଇଗଲେ। ଅନ୍ୟାନ୍ୟ ମନ୍ତ୍ରୀମାନେ ଗିରଫ ହେଲେ।

ବିନା ରକ୍ତପାତରେ ଅକ୍ଟୋବରର ବଲଶେଭିକ୍ ବିପ୍ଳବ ଜୟଯୁକ୍ତ ହେଲା।

Digitized by srujan ka@gmail.com

ଅକ୍ଟୋବର ୨୫ ତାରିଖ ଦିନ ୧୦ ଟା ବେଳେ ଲେନିନ୍ ବିପ୍ଳବୀ-ସେନା-କମିଟି ତରଫରୁ ଏକ ଘୋଷଣା ବାହାର କଲେ । ସେଥିରେ ଥିଲା—

"ରୁଷର ନାଗରିକଗଣ, ଅସ୍ଥାୟୀ ସରକାରକୁ ହଟାଇ ଦିଆଯାଇଛି । କର୍ତ୍ତୃତ୍ୱ କ୍ଷମତା ପେଟ୍ରୋଗ୍ରାଡ଼ର ମଜଦୁର ଓ ସୈନ୍ୟମାନଙ୍କର ସୋଭିଏଟ ସଂସ୍ଥା ପେଟ୍ରୋଗ୍ରାଡ଼ର ମଜଦୁର ଓ ସୈନ୍ୟବାହିନୀର ନେତୃତ୍ୱ ନେଉଥିବା ବିପ୍ଳବୀ-ସେନା-କମିଟି ହାତକୁ ଯାଇଅଛି ।

"ଜନସାଧାରଣ ତୁରନ୍ତ ଗଣତାନ୍ତ୍ରିକ ଶାନ୍ତି ପ୍ରସ୍ତାବ ଲାଗି, ଜମିଦାରୀ ପ୍ରଥାର ଉଚ୍ଛେଦ ଲାଗି, ଉତ୍ପାଦନ ଉପରେ କର୍ମୀଙ୍କ ପ୍ରତିଷ୍ଠା କରିବାଲାଗି ଓ ଏକ ସୋଭିଏଟ୍ ସରକାର ବସାଇବାଲାଗି ଲଢ଼େଇ କରିଥିଲେ । ସେହି ଉଦ୍ଦେଶ୍ୟ ନିଶ୍ଚୟ ସଫଳ ହେବ ।

"ସୈନ୍ୟ, ଶ୍ରମିକ ଓ କୃଷୀଙ୍କର ବିପ୍ଳବ ଦୀର୍ଘଜୀବୀ ହେଉ ।"

ଅକ୍ଟୋବର ସାମ୍ୟବାଦୀ ବିପ୍ଳବ ଜୟଯୁକ୍ତ ହେଲା । ସେହିଦିନ ରାତି ୧୦ ଟାରେ ସୋଭିଏଟମାନଙ୍କର ଦ୍ୱିତୀୟ ଅଧିବେଶନ ବସିଲା । ଅଧିବେଶନରେ ବଲସେଭିକମାନେ ସଂଖ୍ୟାଗରିଷ୍ଠ ହେଲେ । ମେନସେଭିକ, ସୋସିଅଲିଷ୍ଟ ରିଭଲ୍ୟୁସନାରି ଓ ବୁନ୍ଦିଷ୍ଟ ପ୍ରଭୃତି ଦଳ ନିଜର ମରଣ ହୋଇଗଲା ବୋଲି ଜାଣିପାରି ଶେଷ ମୁହୂର୍ତ୍ତରେ ବିପ୍ଳବକୁ ବଦନାମ କରିବାକୁ ଉଦ୍ୟମ କଲେ । ଅକ୍ଟୋବରର ମହାନ୍ ସାମ୍ୟବାଦୀ ବିପ୍ଳବକୁ ଏକ "ସାମରିକ ଷଡ଼ଯନ୍ତ୍ର" ବୋଲି ସେମାନେ ପ୍ରଚାର କଲେ । ସେମାନଙ୍କର କୌଣସି କଥା ମଜଦୁର, ସୈନ୍ୟ ଓ କୃଷି ପ୍ରତିନିଧିମାନେ ଶୁଣିବେ ନାହିଁ ଜାଣିପାରି ସୋଭିଏଟ ଅଧିବେଶନକୁ ପରିତ୍ୟାଗ କଲେ ।

**ସୋଭିଏଟ ଅଧିବେଶନ ମେନସେଭିକ ଓ ସୋସିଅଲିଷ୍ଟ ରିଭଲ୍ୟୁସନାରି-ମାନଙ୍କ ବିଶ୍ୱାସଘାତକ ନୀତିକୁ ଘୋର ନିନ୍ଦାବାଦ କରିଥିଲା ।**

Digitized by srujan ka@gmail.com

ସୋଭିଏଟ୍‌ର ଦ୍ୱିତୀୟ ଅଧିବେଶନ ସେହିଦିନ ରାତିରେ ରାଷ୍ଟ୍ରୀୟ କ୍ଷମତା ନିଜ ହାତକୁ ନେଲା ବୋଲି ଘୋଷଣା କଲା । ଏତେ ଦିନେ ଦ୍ୱୈତଶାସନ ଲୋପ ପାଇଲା । ଫେବୃଆରୀ ବିପ୍ଲବ ପରେ ମଜଦୁରମାନେ 'ସୋଭିଏଟ୍ ହାତକୁ ରାଷ୍ଟ୍ରୀୟ କ୍ଷମତା ଆସୁ' ବୋଲି ଯେଉଁ ଆଦାବି ଦେଇଥିଲେ ତାହା ଏତେଦିନେ ସଫଳ ହେଲା ।

ଯେଉଁ ଦେଶଟି ଜାରଙ୍କର ଅଶୃଙ୍ଖଳି ଶାସନ ତଳେ ଶହ ଶହ ବର୍ଷ ଧରି ବନ୍ଦୀଥିଲା ଆଜି ସେଇ ସୋଭିଏଟ୍‌ଙ୍କର ଶାସନ ପୃଥିବୀର ଛଅଭାଗରୁ ଗୋଟେ ଦେଶ ଭାଗରେ ପ୍ରତିଷ୍ଠିତ ହେଲା । ଲକ୍ଷ କୋଟି ଜନତାର ନୟନରୁ ଲୋତକଧାର ଅଟକି ଗଲା । ଶତ ସହସ୍ର ଶିଶୁଙ୍କର ଶୁଖିଲା ମୁହଁରେ ଆଜି ଉଜ୍ଜ୍ୱଳ ହସ ଆଉ ଦରେଟି ବଚନ ଫୁଟି ଉଠିଲା । ଆଜି ଆନନ୍ଦର କୋଳାହଳ; ମୁକ୍ତଜନତାର ନବଜନ୍ମ । ଉଜ୍ଜ୍ୱଳ ଲାଲ ତାରକଟିଏ ଆଜି ରକ୍ତ ଆକାଶକୁ ମଣ୍ଡିଦେଇ ରକ୍ତ ଜନତାକୁ ଅଭିନନ୍ଦନ ଜଣାଇଲା ।

Digitized by srujan ka@gmail.com

## ମୁକ୍ତି-ଶାନ୍ତି-ପ୍ରଗତିର କାର୍ଯ୍ୟକ୍ରମ ଓ ସାମ୍ରାଜ୍ୟବାଦୀ ଚକ୍ରାନ୍ତର ପରାଜୟ

ଧନ ସମ୍ପତ୍ତିରେ, ଜମିବାଡ଼ିରେ, କଳକାରଖାନାରେ, ଜଙ୍ଗଲରେ, ଖଣିରେ ବ୍ୟକ୍ତିଗତ ମାଲିକାନା ଲୋପ ହେବା ପରେ ଅର୍ଥାତ୍ ଅଳ୍ପ ଲୋକଙ୍କ ଯେଉଁ ଗୋଟିଏ ଶୋଷକ ଦଳ ଓ ବହୁସଂଖ୍ୟକ ଲୋକ ଥିବା ଶୋଷିତ ଶ୍ରେଣୀର ସୃଷ୍ଟି ହେଲା ପରେ ପୃଥିବୀରେ ଯେତେ ବିପ୍ଳବ ହୋଇଛି, ଯେତେ ବିଦ୍ରୋହ ହୋଇଛି, ଯେତେ ରକ୍ତପାତ ହୋଇଛି, କିନ୍ତୁ ୧୯୧୭ ଅକ୍ଟୋବର ବିପ୍ଳବ ଏକ ନୂଆ ଧରଣର, ଏକ ନୂଆ ଢଙ୍ଗର ବିପ୍ଳବ। ଏ ବିପ୍ଳବରେ ଏ ପାଖ ନୋହିଲେ ସେ ପାଖର ଶତ୍ରୁ। ଏ ବିପ୍ଳବରେ ସାଲିସ ନାହିଁ। ଏହା ସମସ୍ତ ଜନ୍ତୁ ବର୍ଗ ଶୋଷଣହୀନ ସମାଜର ଆର୍ଥିକ, ରାଜନୈତିକ ଓ ବ୍ୟକ୍ତିଗତ ବ୍ୟବସ୍ଥାର ଧାଞ୍ଚା ଉପରେ ଏକ ନୂଆ ସଭ୍ୟତା, ଏକ ନୂଆ ସୃଷ୍ଟି, ଏକ ନୂଆ ସମାଜଗଢ଼ାର ବୈଜ୍ଞାନିକ ପରିକଳ୍ପନାର ବାସ୍ତବ ରୂପ। ଏହି ସମାଜରେ ଗୋଟିଏ ଶ୍ରେଣୀ ଉପରେ ଅନ୍ୟ ଶ୍ରେଣୀର ଶୋଷଣ ରହିବ ନାହିଁ। ତେଣୁ ମାଲିକ ଶ୍ରେଣୀ—ମଜୁରିଆ ଶ୍ରେଣୀ, ଜମିଦାର ଶ୍ରେଣୀ—କୃଷି ଶ୍ରେଣୀ, ମୋଟ କଥାରେ ଧନୀଶ୍ରେଣୀ, ଗରିବ ଶ୍ରେଣୀ ରହିବେ ନାହିଁ। ଏହି ସମାଜ ହେବ ଶୋଷଣ-ହୀନ, ଶ୍ରେଣୀ ବିହୀନ ସମାଜ।

Digitized by srujan ka@gmail.com

ମଣିଷ ଜୀବନର ସ୍ୱପ୍ନ ଅଳ୍ପ ବର୍ଷ ବାସ୍ତବତାରେ ପରିଣତ ହେଲା । କାରଣ ସେ ସ୍ୱପ୍ନ ଏକ ବୈଜ୍ଞାନିକ ପନ୍ଥା ଧରି ଏକ ବୈଜ୍ଞାନିକ ଦଳର ନିର୍ଦ୍ଦେଶରେ ପରିଚାଳିତ ହେଲା ।

ଦୁନିଆ ସମୀପରେ ରୁଷ ଏକ ଆଲୋକ ସ୍ତମ୍ଭ ରୂପେ ଛିଡ଼ା ହେଲା । ଦୁନିଆର ବିପ୍ଳବୀଙ୍କୁ, ଦୁନିଆର ମଜଦୁରଙ୍କୁ, ଦୁନିଆର ଚାଷୀଙ୍କୁ ରୁଷ ଡାକଦେଲା—ନିଜର ମୁକ୍ତିପାଇଁ ଏକମାତ୍ର ବୈଜ୍ଞାନିକ ପନ୍ଥା ଓ ପନ୍ଥାର ବୈଜ୍ଞାନିକ ପ୍ରୟୋଗ କୌଶଳ ବାଛିନେବାକୁ ।

ମୁକ୍ତ ଶାନ୍ତ ପ୍ରଗତିର ଯୁଗ ରୁଷରେ ଆରମ୍ଭ ହେଲା । ଏହି ଯୁଗ ଆଣିବା ଲାଗି କେତେ ଆତ୍ମବଳି ଦାନ କରିବାକୁ ପଡ଼ିଲା ପୂର୍ବୋକ୍ତ ସଂକ୍ଷିପ୍ତ ବିବରଣୀରୁ କେବଳ ତାହାର ସୂଚନା ମିଳିପାରେ । ମାତ୍ର ଏହି ବିପ୍ଳବକୁ ରକ୍ଷାକରି ଦେଶର ସାମ୍ୟବାଦୀ ସଂଗଠନ ଲାଗି ଯେଉଁ ଆୟୋଜନ ହେଲା, ସାମ୍ରାଜ୍ୟବାଦୀ ଯୁଦ୍ଧରୁ ଦେଶକୁ ଅଲଗା କରିବାକୁ ଯେଉଁ ନୀତି ଧାର୍ଯ୍ୟ ହେଲା ସେ ସବୁକୁ କାର୍ଯ୍ୟରେ ପରିଣତ କରିବାଲାଗି ବର୍ଷ ବର୍ଷ ପାଇଁ ଅଜସ୍ର ସହସ୍ର ସହସ୍ର, ଲକ୍ଷ ଲକ୍ଷ ଲୋକଙ୍କୁ ଆତ୍ମବଳି ଦେବାକୁ ପଡ଼ିଲା ।

ବିପ୍ଳବ ଜୟଯୁକ୍ତ ହେଲା ସତ; ମାତ୍ର ବିପ୍ଳବର ଶତ୍ରୁ ଏକାବେଳକେ ନିର୍ମୂଳ ହେଲେ ନାହିଁ । ନାନା ସମୟରେ ନାନା ରୂପ ଧରି, ନାନା ବାହାନା କରି, କେବେ କେବେ ବିପ୍ଳବାନୁଗାମୀ ଭାବେ ସୋଭିଏଟ୍ ସରକାରକୁ, ସାମ୍ୟବାଦକୁ, କୃଷକ ମଜଦୁରଙ୍କୁ ଧ୍ୱଂସ କରିବା ଲାଗି କେତେ ଯେ ଶତ୍ରୁ ବାହାରିଲେ ତା'ର ସୀମା ନାହିଁ । କିନ୍ତୁ ସେମାନେ ବିପ୍ଳବର ଜୁଆର ଆଗରେ ତିଷ୍ଠି ପାରିଲେ ନାହିଁ ।

ଅକ୍ଟୋବର ୨୬ ତାରିଖ ଦିନ ସୋଭିଏଟ୍ ଅଧିବେଶନର ଦ୍ୱିତୀୟ ଦିନର ବୈଠକ ବସିଲା । ଶାନ୍ତି ସ୍ଥାପନ ସମ୍ବନ୍ଧରେ ନିର୍ଦ୍ଦେଶ, ଜମି ସଂକ୍ରାନ୍ତରେ ନିର୍ଦ୍ଦେଶ ଓ କଳକାରଖାନା ସଂକ୍ରାନ୍ତରେ ନିର୍ଦ୍ଦେଶମାନ ସୋଭିଏଟ୍ ଅଧିବେଶନ ଧାର୍ଯ୍ୟକଲା ।

Digitized by srujan ka@gmail.com

ଜମି ଉପରେ ବ୍ୟକ୍ତିଗତ ଅଧିକାରକୁ ଚିରଦିନ ପାଇଁ ଉଠାଇ ଦିଆଗଲା ଏବଂ ଜମିଦାର, ଜମିମାଲିକ, ରାଜା ଓ ରାଜପରିବାର ତଥା ମଠମାନଙ୍କ ସମ୍ପତ୍ତିକୁ ଲୋକ ସମ୍ପତ୍ତିରେ ପରିଣତ କରାଗଲା । ଫଳରେ ତେଇଶ କୋଟି ଏକର ଜମିକୁ କୃଷିମାନେ ପାଇଲେ । ଏହାଦ୍ୱାରା କୃଷିମାନେ ବର ଅଭାବରେ ଜମିଦାର ପ୍ରଭୃତିଙ୍କୁ ବାର୍ଷିକ ଯେଉଁ ପଚିଶକୋଟି ରୁବଲ ( ସୁନାର ରୂପମୁଦ୍ରା ) ଦେଉଥିଲେ ତାହା ବନ୍ଦ ହୋଇଗଲା ।

ତୃତୀୟ ଘୋଷଣାର ଅର୍ଥ ଶିଳ୍ପ ଘୋଷଣା ଏହା ସାମ୍ୟବାଦୀ ଅର୍ଥନୀତିର ମୂଳପତ୍ତନ ପକାଇବା ପାଇଁ କଳକାରଖାନା, ଶିଳ୍ପ, ବ୍ୟାଙ୍କ, ରେଳବାଇ, ଜଙ୍ଗଲ ଓ ଖଣି, ବୋଇତ, ତେଲ ଖଣି ପ୍ରଭୃତିର ଖଣିକୁ ସାରା ଜାତିର ସମ୍ପତ୍ତି ବୋଲି ଘୋଷଣା କରାଗଲା ଏବଂ ବ୍ୟକ୍ତିବିଶେଷ ପୁଞ୍ଜିପତିଙ୍କର ସବୁ ସ୍ୱତ୍ୱକୁ ଉଚ୍ଛେଦ କରାଗଲା ।

ଜାରଶାହୀ ସରକାର ବ୍ରିଟେନ ଫ୍ରାନ୍ସ ପ୍ରଭୃତି ସାମ୍ରାଜ୍ୟବାଦୀ ଦେଶ ଠାରୁ ଯେଉଁ ଋଣ କରିଥିଲେ, ସୋଭିଏଟ୍ ସରକାର ସେ ଋଣକୁ ଅସ୍ୱୀକାର କରିଦେଲେ । ତାହା ଫଳରେ ବିଦେଶୀ ପୁଞ୍ଜିପତିଙ୍କ କର୍ତ୍ତୃତ୍ୱ ସୋଭିଏଟ ଋଷ ଉପରୁ ଲୋପ ହେଲା ।

ସାମାଜିକ ଜୀବନରେ ଛୋଟବଡ଼ ଭେଦକୁ ବେଆଇନ କରାଗଲା । ସ୍ତ୍ରୀ ପୁରୁଷ ଉଭୟଙ୍କୁ ସମାନ ଅର୍ଥିକ, ରାଜନୈତିକ ଓ ସାମାଜିକ ଅଧିକାର ଦିଆଗଲା । ଋଷରେ ବାସକରୁଥିବା ବହୁଲ ଜାତିମାନଙ୍କୁ ସ୍ୱତନ୍ତ୍ର ଓ ସାର୍ବଭୌମ ଜୀବନ ଲାଗି ଅଧିକାର ଦିଆଗଲା ଏବଂ ପ୍ରତ୍ୟେକ ମଣିଷର ଉପାସନାରୀତି ତଥା ଜାତିବୋଧର ଉନ୍ନତି ପାଇଁ ସବୁପ୍ରକାର ସୁଯୋଗ ଦିଆଯିବ ବୋଲି ଘୋଷଣା କରାଗଲା ।

ସାମ୍ରାଜ୍ୟବାଦୀ ସମରକୁ ବନ୍ଦ କରିବା ଓ ଏହିଭଳି ସୋଭିଏଟ ଋଷକୁ ସେଥିରୁ ଅଲଗା କରିବା ଲାଗି ସୋଭିଏଟ ସରକାର ଯୁଦ୍ଧରତ ଦେଶମାନଙ୍କର ସରକାରଙ୍କୁ ଅହ୍ୱାନ କଲେ ଏବଂ ବ୍ରିଟେନ, ଫ୍ରାନ୍ସ ଓ ଜର୍ମାନ ଦେଶର

Digitized by srujan ka@gmail.com

କୃଷି ମଜଦୁରଙ୍କୁ ନିଜ ଦେଶରେ ବିପ୍ଳବର ରୂପରେ ଏ ପ୍ରଳୟଙ୍କରୀ ଯୁଦ୍ଧକୁ ବନ୍ଦ କରିବାକୁ ଡାକ ଦେଲେ । ଯଦି ଋଷର ମିତ୍ର ବ୍ରିଟେନ ଓ ଫ୍ରାନ୍ସ ଯୁଦ୍ଧ ନ କରନ୍ତି, ତେବେ ସୋଭିଏଟ ଋଷ ସ୍ୱତନ୍ତ୍ର ଚୁକ୍ତି କରିଯିବ ବୋଲି ମଧ୍ୟ ଘୋଷିତ ହେଲା । ବ୍ରିଟେନ ଓ ଫ୍ରାନ୍ସ ଏଥିରେ ଏକମତ ହେଲେ ନାହିଁ । ତେଣୁ ମିତ୍ରପକ୍ଷରୁ ଋଷ ଜର୍ମାନୀ ସରକାରଙ୍କୁ ଯୁଦ୍ଧବନ୍ଦ ସନ୍ଧି ପ୍ରସ୍ତାବ ପଠାଇଲା । ଜର୍ମାନୀ ସରକାର ନିଜ କୌଶଳଦୃଷ୍ଟିରୁ ସୋଭିଏଟ ଋଷ ସଙ୍ଗେ ସ୍ୱତନ୍ତ୍ର ସନ୍ଧିଲାଗି ରାଜି ହେଲା । ତେଣୁ ସନ୍ଧି ସ୍ୱାକ୍ଷରିତ ହେବା ପର୍ଯ୍ୟନ୍ତ ଉଭୟଙ୍କ ମଧ୍ୟରେ ଯୁଦ୍ଧ ବନ୍ଦ ରହିଲା ।

ଜର୍ମାନ ସାମ୍ରାଜ୍ୟବାଦୀମାନେ ଏଥି ଯୁଦ୍ଧ ବନ୍ଦ କଲେ ସତ; ମାତ୍ର କିପରି ଭାବେ ସେମାନଙ୍କ ଶୋଷଣ, ପରାଧୀନତାର ଶୃଙ୍ଖଳ ଓ ଅନ୍ୟାୟର ବୋଝାପୁ ଚାପିବେ ତା'ର ଉଦ୍ୟମ କଲେ । ୟୁକ୍ରେନ ସୋଭିଏଟ ସରକାର-ଠାରୁ ସ୍ୱାତନ୍ତ୍ର୍ୟ ହାସଲ କରିଥାଏ । ୟୁକ୍ରେନର ସବୁ ଜାତୀୟ ଅନୁଷ୍ଠାନରେ ଧନିକ ଶ୍ରେଣୀ, ବେଲ ଦଳର ପ୍ରତିନିଧି ଥାଆନ୍ତି । ବୁର୍ଜୁଆ ସୁବିଧାବାଦୀ ଶ୍ରେଣୀଙ୍କୁ ହାତକରି ଜର୍ମାନ ସାମ୍ରାଜ୍ୟବାଦୀ ୟୁକ୍ରେନ ସଙ୍ଗେ ଏକ ସ୍ୱତନ୍ତ୍ର ସନ୍ଧିକରି ସୋଭିଏଟ ସରକାରକୁ ଅଡ଼େଇ ଦେଇଥିଲେ ଓ ସୋଭିଏଟ ସରକାରର ଗଣତାନ୍ତ୍ରିକ ସନ୍ଧି ପ୍ରସ୍ତାବକୁ ଛାଡ଼ି ଏକ ଅପମାନ୍ୟ ସନ୍ଧି ଲାଗି ଉଦ୍ୟମ କଲେ । ମାତ୍ର ସୋଭିଏଟ ସରକାର ଓ ବଲଶେଭିକ ପାର୍ଟିର ଆହ୍ୱାନରେ ବର୍ଲିନ, ହାମବର୍ଗ, ଅଷ୍ଟ୍ରିଆର ମଜଦୁରମାନେ ଧର୍ମଘଟ କରି ଯୁଦ୍ଧ ବନ୍ଦର ଆବାଜ ଉଠାଇଲେ । ଜର୍ମାନ ଓ ଅଷ୍ଟ୍ରିଆର ସାମ୍ରାଜ୍ୟ-ବାଦୀ ସରକାରମାନେ ନଇଁ ଆସିଲେ ।

ମାତ୍ର ଏତିକିବେଳେ ବୁଖାରିନ, ଟ୍ରଟସ୍କି, ପାୟାଟାକଭ୍ ପ୍ରଭୃତି ନେତାଙ୍କ ଦଳ ପାର୍ଟିର କେନ୍ଦ୍ର କମିଟିରେ "ଯୁଦ୍ଧ ବନ୍ଦ କରିବୁ, କିନ୍ତୁ ସନ୍ଧି କରିବୁ ନାହିଁ" ଏହିପରି ନୀତି ପାସ୍ କରାଇନେଲେ । ଲେନିନ୍ ଏହି ପ୍ରସ୍ତାବର ଘୋର ବିରୋଧ କରି ସାବଧାନ କରିଦେଲେ ଯେ, ଏତେ-

Digitized by srujan ka@gmail.com

ବେଳେ ସନ୍ଧି କରିଥିଲେ ସୋଭିଏଟ ସେତେ ଲାଭବାନ୍ ହୋଇଥାନ୍ତା ପରେ ତାକୁ ତା ଠାରୁ ବେଶୀ କ୍ଷତି ସହିବାକୁ ହେବ ।

ସତକୁ ସତ ୧୯୧୮ ଫେବ୍ରୁଆରୀରେ ଜର୍ମାନ ଯୁଦ୍ଧବନ୍ଦ ସନ୍ଧିକୁ ଭଙ୍ଗ ରୁଷ ଉପରେ ତୋଫାନୀ ଆକ୍ରମଣ କଲେ । ଜର୍ମାନ ସୈନ୍ୟବାହିନୀ ଲାଟଭିଆ, ଇସ୍ତୋନିଆ, ଶ୍ୱେତରୁଷ ଓ ୟୁକ୍ରେନର ଅନେକ ଅଞ୍ଚଳ ଦଖଲ କରିଗଲେ ।

ବଲସେଭିକ ପାର୍ଟିର କେନ୍ଦ୍ର କମିଟି ଟ୍ରଟସ୍କି ଓ ବୁଖାରିନଙ୍କ ପନ୍ଥାର ପ୍ରମାଦ ବୁଝି ପାରିଲେ । ମାର୍ଚ୍ଚ ୨ ତାରିଖରେ ବ୍ରେଷ୍ଟ ଲିଟୋଭସ୍କଠାରେ ସନ୍ଧି ସ୍ୱାକ୍ଷରିତ ହେଲା । ମାତ୍ର ସୋଭିଏଟ ରୁଷ ପକ୍ଷରେ ଏ ସନ୍ଧି ଘୋର ଅପମାନଜନକ ହେଲା । ଲେନିନଙ୍କ ଗଣନା ସତ୍ୟ ବୋଲି ପ୍ରମାଣିତ ହେଲା ।

ସନ୍ଧି ଲାଗି ଶତ୍ରୁ ସଙ୍ଗରେ ଏ ତୁମୂଳ ସଂଗ୍ରାମ ଚାଲିଥିବାବେଳେ ଦେଶ ଭିତରେ ସୋଭିଏଟ ଶାସନକୁ ଉଚ୍ଛେଦ କରିବା ଲାଗି ମଧ୍ୟ ଉଦ୍ୟମ ଚାଲିଥିଲା । ବିପ୍ଳବର ଠିକ୍ ପରେ ମସ୍କୋ ସହରରେ ମେନସେଭିକ୍ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରିମାନେ ସୋଭିଏଟ ସରକାରକୁ ଭାଙ୍ଗିଦେବା ଲାଗି ଉଦ୍ୟମ କଲେ । ବୁଖାରିନ, ଟ୍ରଟସ୍କି ପ୍ରଭୃତି ଶତ୍ରୁର ଗୁପ୍ତଚରରୂପେ ପାର୍ଟିର ଐକ୍ୟକୁ ଭାଙ୍ଗିବାରେ ଲାଗିଲେ । ପରେ ଜଣା ପଡ଼ିଲା ଯେ, ବୁଖାରିନ, ଟ୍ରଟସ୍କି, ସାମ୍ରାଜ୍ୟବାଦର ଚକ୍ରାନ୍ତରେ ଲେନିନ, ଷ୍ଟାଲିନ ଓ ସ୍ୱେର୍ଡଲୋଭ ପ୍ରଭୃତିଙ୍କୁ ମାରି ସୋଭିଏଟ ଶାସନକୁ ଭାଙ୍ଗିଦେବାର ଉଦ୍ୟମ କରୁଥିଲେ । ପେଟ୍ରୋଗ୍ରାଡ଼ରେ କ୍ୟାଡେଟମାନେ ବିଦ୍ରୋହ କରି ଉଠିଲେ । ଜେନେରାଲ କ୍ରାସନୋଭଙ୍କ ନେତୃତ୍ୱରେ କୋସାକବାହିନୀ ସୋଭିଏଟ ବିରୁଦ୍ଧରେ ପଠାଗଲେ । କେବଳ ସର୍ବହରାର ସଚେତ କର୍ତ୍ତୃ ପ୍ରଭାବରେ ଅତି ଧୈର୍ଯ୍ୟ ଓ ଦୃଢ଼ତା ସହ ଲୋକେ ଏହାର ବିରୋଧୀ ହୋଇ ଶତ୍ରୁଙ୍କୁ ପରାସ୍ତ କଲେ ।

ବିଦ୍ରୋହ ବା ଷଡ଼ଯନ୍ତ୍ର ପ୍ରଭୃତି ଘୃଣ୍ୟ ଉଦ୍ୟମରେ ପରାସ୍ତ ହୋଇ ମେନସେଭିକ୍ ଓ ସୋସିଆଲିଷ୍ଟ ରିଭୋଲ୍ୟୁସନାରିମାନେ ଅନ୍ୟ ଏକ ଉଦ୍ୟମ କଲେ । ଅଗରୁ କାମ କରୁଥିବା କର୍ମଚାରୀ, ଅଫିସର ଓ କିରାଣି ଧର୍ମଘଟ

Digitized by srujan ka@gmail.com